


# ଜନ୍ମଦିନର ଉପହାର




ପରମପୂଜ୍ୟ ଗୁରୁଦେବ ପ.ଶ୍ରୀରାମଶର୍ମା ଆଚାର୍ଯ୍ୟ
ପରମ ବନ୍ଦନୀୟା ମାତାଜୀ ଭଗବତୀ ଦେବୀ ଶର୍ମା

# ପ୍ରେମୋପହାର

ଆଜିର ପବିତ୍ର ଶୁଭ ଅବସରରେ ପରମପିତା, ପରମେଶ୍ୱର ତଥା ମହାକାଳ, ଆପଣଙ୍କର ଚଲାପଥକୁ କୁସୁମିତ କରନ୍ତୁ ଏହାହିଁ ଆମର ପ୍ରାର୍ଥନା ।

ଆନ୍ତରିକ ଶୁଭେଚ୍ଛା ସହ

ଶ୍ରୀ/ଶ୍ରୀମତୀ.........................................................

# ଜନ୍ମଦିନର ଉପହାର



ମୂଳରଚନା

ବେଦମୂର୍ତ୍ତି ତପୋନିଷ୍ଠ

ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ



ଉତ୍କଳାନୁବାଦ

ଡକ୍ଟର କୃତ୍ତିବାସ ନାୟକ

# ଜନ୍ମଦିନର ଉପହାର

ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟ

ପ୍ରକାଶକ :

**କେ.ପି. ମେମୋରିଆଲ୍ ଆଣ୍ଡ ଚ୍ୟରିଟେବୁଲ୍ ଟ୍ରଷ୍ଟ**

ଭୁବନେଶ୍ୱର, ଓଡ଼ିଶା, ଫୋନ୍-୯୪୩୯୦୦୭୮୫୪

ପ୍ରଥମ ସଂସ୍କରଣ : ଅପ୍ରେଲ-୨୦୧୭

ମୂଲ୍ୟ : ୧୫/-ଟଙ୍କା ମାତ୍ର

ମୁଦ୍ରଣ : ସମ୍ପର୍କ ପ୍ରେସ୍, ଭୁବନେଶ୍ୱର

---

**Janmadinara Upahar**

Pandit Shriram Sharma Acharya

***Publisher :***

K.P. Memorial & Charitable Trust
Bhubaneswar, Odisha
Phone-9439007854

1st Edition - April-2017

***Price :*** 15/-

Pinted at : Sampark Press, BBSR.



## ଗାୟତ୍ରୀ ପରିଜନମାନଙ୍କୁ ପଦେ

ବର୍ତ୍ତମାନ ସାରା ବିଶ୍ୱରେ ବ୍ୟାପ୍ତ ଅସୁରତାର ନିବାରଣ ହେତୁ ଜନମାନସର ପରିଷ୍କାର ଜରୁରୀ । ଏଥିନିମନ୍ତେ ପରମପୂଜ୍ୟ ଗୁରୁଦେବ ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟଙ୍କ ଦ୍ୱାରା ରଚିତ ହୋଇଥିବା ବିଭିନ୍ନ ପୁସ୍ତକଗୁଡ଼ିକ ଏକ ବଳିଷ୍ଠ ମାଧ୍ୟମ । ପୁସ୍ତକ ମାଧ୍ୟମରେ ବିଚାର ପରିବର୍ତ୍ତନ ହିଁ ଯୁଗ ପରିବର୍ତ୍ତନର ମୁଖ୍ୟ ଆଧାର । ସ୍ଥାୟୀ ପରିବର୍ତ୍ତନ ସକାଶେ ବ୍ୟକ୍ତିର ବିଚାରରେ ପରିବର୍ତ୍ତନ ଆବଶ୍ୟକ । ଏହାଦ୍ୱାରା ବ୍ୟକ୍ତିର ନିର୍ମାଣ ହୋଇଥାଏ ଏବଂ ବ୍ୟକ୍ତି ନିର୍ମାଣଦ୍ୱାରା ହିଁ ଯୁଗ ନିର୍ମାଣ ସମ୍ଭବ । ବିଚାରକୁ ପ୍ରତ୍ୟେକ ବ୍ୟକ୍ତିପର୍ଯ୍ୟନ୍ତ ପ୍ରଭାବଶାଳୀ ଢଙ୍ଗରେ ପହଞ୍ଚାଇବାର ସର୍ବଶ୍ରେଷ୍ଠ ମାଧ୍ୟମ ହେଉଛି 'ଗୁରୁଦେବଙ୍କ ସାହିତ୍ୟ' । ପୂଜ୍ୟ ଗୁରୁଦେବଙ୍କଦ୍ୱାରା ରଚିତ କ୍ରାନ୍ତିକାରୀ ଯୁଗ ସାହିତ୍ୟକୁ ଲୋକମାନଙ୍କ ପର୍ଯ୍ୟନ୍ତ ପହଞ୍ଚାଇବା ହିଁ ଆଜିର ଯୁଗଧର୍ମ । ପ୍ରତ୍ୟେକ ପରିଜନ, ପାଠକ-ପାଠିକା ନିଜର ଏହି କର୍ତ୍ତବ୍ୟ ପାଳନକରି ମହାକାଳଙ୍କ ଯୁଗନିର୍ମାଣ କାର୍ଯ୍ୟରେ ଭାଗୀଦାର ହେବା ନିମନ୍ତେ ସମସ୍ତଙ୍କୁ ବିନମ୍ର ନିବେଦନ ।

*-ପ୍ରକାଶକ*

# ବିଶେଷ ଜ୍ଞାତବ୍ୟ

ଆପଣଙ୍କର ଆଗାମୀ ଜନ୍ମଦିନ ନିକଟରେ ଆସିଯିବ, ସେହି ମଙ୍ଗଳମୟ ଅବସରରେ ଆମେ ନିଜର ପରିବାରର ସମସ୍ତ ସଦସ୍ୟ ଓ ପରିଜନଙ୍କ ତରଫରୁ ହାର୍ଦ୍ଦିକ ଶୁଭକାମନା ପଠାଉଛୁ ।

ଆପଣ ନିଜର ଜନ୍ମଦିନକୁ ଉତ୍ସାହପୂର୍ବକ ବାତାବରଣରେ ପାଳନ କରିବାପାଇଁ ଏବେଠାରୁ ପ୍ରସ୍ତୁତ ହୋଇଯାଆନ୍ତୁ । ଯୁଗନିର୍ମାଣ ଶାଖାର ସଦସ୍ୟ ତଥା ନିଜ ପ୍ରିୟବନ୍ଧୁ ପରିଜନମାନଙ୍କୁ ଏବେଠାରୁ ନିମନ୍ତ୍ରିତ କରିଦିଅନ୍ତୁ । ଗୋଟିଏ ଛୋଟ ଧରଣର ଧର୍ମଉତ୍ସବ ନିର୍ଦ୍ଧାରିତ ବିଧି-ବିଧାନ ସହିତ ଆୟୋଜନ କରନ୍ତୁ । ଜନ୍ମଦିନ ପାଳନର ପରମ୍ପରା ଆପଣଙ୍କ ପ୍ରିୟଜନମାନଙ୍କୁ ପ୍ରେରଣା ଦେବ । ଏଥିପାଇଁ ଆପଣଙ୍କୁ ବିଶେଷ ଭାବରେ ସଂଗଠିତ ପ୍ରଯତ୍ନ କରିବା ଉଚିତ । ଏହି ଆୟୋଜନ ବ୍ୟକ୍ତି ନିର୍ମାଣର ଉଦ୍ଦେଶ୍ୟକୁ ପୂର୍ଣ୍ଣ କରିବା ଦିଗରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ ।

ଆପଣ ଆମ ପରିବାରର ଜଣେ ପରମ ପ୍ରିୟ ଏବଂ ଅତି ନିକଟବର୍ତ୍ତୀ ସଦସ୍ୟ । ଆପଣଙ୍କ ଜନ୍ମଦିନରେ ଆମେ ନିଜର ପୂଜାଘରେ ଆପଣଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଉଦ୍ଦେଶ୍ୟରେ ବିଶେଷ ଭାବରେ ପ୍ରାର୍ଥନା କରିବୁ । ତେଣୁ ଆପଣଙ୍କଠାରୁ ଆମେ ଆଶା କରିବୁ ଯେ, ଆପଣ ନିଜର ଜୀବନୋଦ୍ଦେଶ୍ୟରେ ଏକ ବିଶେଷ ଭାବରେ ମନନ କରିବେ ଏବଂ ଶେଷଜୀବନ ପାଇଁ ଏମିତି ଏକ କାର୍ଯ୍ୟପଦ୍ଧତି ନିର୍ଦ୍ଧାରିତ କରିବେ, ଯାହା ଆପଣଙ୍କ ପାଇଁ, ସମସ୍ତ ସମାଜ ପାଇଁ ଏବଂ ଆମପାଇଁ ଗର୍ବ-ଗୌରବ ଏବଂ ସନ୍ତୋଷ ଉଲ୍ଲାସର କାରଣ ହୋଇରହିବ ।

ଏହି ପ୍ରୀତି ଉପହାର ପୁସ୍ତିକାକୁ ଋଷିସତ୍ତାର ବିଶେଷ ସଂଦେଶ ଏବଂ ଆମମାନଙ୍କର ଅନୁରୋଧ ବୋଲି ଧରିନେବେ । ଜନ୍ମଦିନ ଆସିବାର ଯଥେଷ୍ଟ ପୂର୍ବରୁ ଏହାକୁ ବାରମ୍ବାର କେତେଥର ପଢ଼ିନେବେ । ଜନ୍ମଦିନରେ ଏକାନ୍ତରେ ବସି ଏହାର ପ୍ରତ୍ୟେକ ପଂକ୍ତିକୁ ବିଶେଷ ଭାବରେ ଚିନ୍ତନ ମନନ କରିବେ । ପ୍ରସ୍ତୁତି ପ୍ରେରଣାର ଅନୁରୂପ ଭାବୀ ଗତିବିଧି ଗୁଡ଼ିକୁ ନିର୍ଦ୍ଧାରିତ କରିବାପାଇଁ ଯତ୍ନବାନ ହେବେ । ଏହି ପୁସ୍ତକର ଅଧିକ କପି ମଗାଇ ନିଜ ଘରେ ରଖିଥିବେ । ନିଜର ପ୍ରିୟଜନ, ସାଥୀ, ଶ୍ରଦ୍ଧାଳୁ ଏବଂ ପରିଚିତ ଲୋକମାନଙ୍କୁ ତାଙ୍କର ଜନ୍ମଦିନରେ ଉପହାର ସ୍ୱରୂପ ପ୍ରଦାନ କରନ୍ତୁ ।

ଏହି ଶୁଭ ଅବସରରେ ଆପଣଙ୍କର ଉଜ୍ଜ୍ୱଳ ଭବିଷ୍ୟ ଉଦ୍ଦେଶ୍ୟରେ ଆଉଥରେ ଆମର ହାର୍ଦ୍ଦିକ ଶୁଭକାମନା ଜଣାଉଛୁ ।



# ଜନ୍ମଦିନର ସନ୍ଦେଶ

ମନୁଷ୍ୟ ଜନ୍ମ ହେଉଛି- ଭଗବାନଙ୍କର ସର୍ବଶ୍ରେଷ୍ଠ ଉପହାର । ସୃଷ୍ଟିରେ କୋଟି କୋଟି ଜୀବ ଜନ୍ମିଛନ୍ତି । ଧରିତ୍ରୀ ଉପରେ ବାସ କରୁଥିବା ଜୀବ, ଆକାଶରେ ଉଡୁଥିବା ପକ୍ଷୀ ଓ ଜଳରେ ଜୀବନ ବିତାଉଥିବା ଅଗଣିତ ଜଳଚର ପ୍ରାଣୀ ଏହି ସଂସାରରେ ରହୁଛନ୍ତି । ସେମାନଙ୍କ ମଧ୍ୟରୁ କାହାରିକୁ ବି ମଣିଷକୁ ମିଳିଥିବା ସୁବିଧା ସୁଯୋଗ ମିଳିନାହିଁ । ବ୍ୟବସ୍ଥିତ ରୀତିରେ କଥାବାର୍ତ୍ତା କରିବା ଓ ସୁସଂଗଠିତ ଭାବରେ ଚିନ୍ତା କରିବାର କ୍ଷମତା ମଣିଷ ବ୍ୟତୀତ ଅନ୍ୟ କୌଣସି ଜୀବକୁ ମିଳିପାରିନାହିଁ । ଅନ୍ୟ ପ୍ରାଣୀମାନେ କେବଳ ଜୀବନଯାତ୍ରାରେ ସମ୍ମୁଖୀନ ହେଉଥିବା ସମସ୍ୟାର ସମାଧାନ କରୁକରୁ ତାଙ୍କର ଜୀବନ ଶେଷ ହୋଇଯାଏ । ତଥାପି ସେମାନେ ଆହାର, ବିହାର ଓ ନିଜ ସୁରକ୍ଷାରେ ଯତ୍ନବାନ ହେଇଥାନ୍ତି । ନିଜର ସମାଜରେ ପାରସ୍ପରିକ ସହଯୋଗ ଦ୍ୱାରା ସେମାନେ ମଧ୍ୟ ଚିନ୍ତିତ ହୋଇଥା'ନ୍ତି । ମଣିଷ ଯେଉଁ ଅନେକ ପ୍ରକାର ସୁବିଧା ସାମଗ୍ରୀ ପାଇଛି, ବିଚରାମାନଙ୍କ ଭାଗ୍ୟରେ ସେ ସବୁ ମିଳିବ କେଉଁଠୁ ? ବୁଦ୍ଧିର ବିକାଶ ହେଇ ନଥିବାରୁ ବିଚାର କରିବା ଏବଂ ଭାବନା କ୍ଷେତ୍ରରେ

ପହଞ୍ଚିବା ଉଲ୍ଲାସ-ଆନନ୍ଦରୁ ସେମାନେ ଏକପ୍ରକାର ବଞ୍ଚିତ ହୋଇଥା'ନ୍ତି । ସେମାନଙ୍କର ତୁଳନାରେ ମଣିଷ କେତେ ନା' କେତେ ଅଧିକ ସୁଖୀ ଓ ସାଧନ ସଂପନ୍ନ ହୋଇପାରିଛି । ଏହାକୁ ସୂକ୍ଷ୍ମ ଭାବରେ ବିଚାର କରାଯାଏ ତ ଏଥିରୁ ପ୍ରତୀତ ହେବ ଯେ, ଭଗବାନ ତାଙ୍କ ସୃଷ୍ଟିରେ ମଣିଷକୁ ସର୍ବଶ୍ରେଷ୍ଠ ପ୍ରାଣୀ ଭାବରେ ଗଢ଼ି ତାଙ୍କୁ ସର୍ବାଧିକ ସାଧନ-ସୁବିଧା ପ୍ରଦାନ କରିଛନ୍ତି ।

ମଣିଷ ତୁଳନାରେ ଦେବତାମାନଙ୍କର କ୍ଷମତା ଓ ସୁବିଧା ଅଧିକ ଥିବା ଆମର ବିଶ୍ୱାସ ରହିଛି । ପୃଥିବୀ ତୁଳନାରେ ସ୍ୱର୍ଗର ଆନନ୍ଦ-ଉଲ୍ଲାସର ଅଧିକ ସାଧନ ରହିଛି । ଏହି ଧାରଣାରୁ ମଣିଷ ମନରେ ସ୍ୱର୍ଗଲାଭ ଏବଂ ସ୍ୱର୍ଗବାସ କରି ରହିବାର ଲାଳସା ଜାଗ୍ରତ ହୁଏ । ଦେବତାମାନେ ସେଠାରେ ସୁଖରେ ଅଛନ୍ତି, ସ୍ୱର୍ଗପରି ଆନନ୍ଦଦାୟୀ ସ୍ଥାନ ପୃଥିବୀରେ ମଣିଷକୁ ମିଳେନାହିଁ । ଏହି ଧାରଣାରୁ ମଣିଷ ମନରେ ଅଧିକ ସୁଖୀ ହେବା ଉଦ୍ଦେଶ୍ୟରେ ଏପରି ଭାବନା ସୃଷ୍ଟି ହେବା ସ୍ୱାଭାବିକ । ସ୍ୱର୍ଗୀୟ ଜୀବନ ବିତେଇବାକୁ ତାଙ୍କୁ କିଭଳି ସୁଯୋଗ ମିଳୁ । ସ୍ୱର୍ଗସୁଖକୁ କଳ୍ପନାକରି ଆମମାନଙ୍କ ପାଟିରୁ ଲାଳ ବୋହିପଡ଼େ, ଆମପରି ଯଦି ଅନ୍ୟପ୍ରାଣୀମାନେ ଚିନ୍ତାକରି ପାରନ୍ତେ, ତେବେ ସେମାନେ ଭାବନ୍ତେ, ମଣିଷହୋଇ ଜନ୍ମହେଲେ, ଆମେ ବି ତାଙ୍କପରି ସୁଖ-ସୁବିଧା ପାଇ ପାରନ୍ତୁ । ଏଭଳି ସୁଯୋଗ ପାଇବାର ଅବସର ଆମକୁ ମିଳିପାରନ୍ତା ।

ସମୁହ ସୃଷ୍ଟିର ଅନ୍ୟ ପ୍ରାଣୀଙ୍କ ସହିତ ତୁଳନା କଲେ, ମଣିଷ ପାଇଥିବା ସୁବିଧା ବହୁତ ଅଧିକ । ଯାହା ଦେବତାଙ୍କ ସହିତ ମଣିଷ ମଧ୍ୟରେ ରହିଛି । ଶରୀର ଗଠନ ଦୃଷ୍ଟିରୁ ବିଚାର କଲେ, ଦେବତାମାନେ ତ ମଣିଷ ସ୍ତରରେ ଅନୁମିତ ହୁଏ । ସେମାନଙ୍କୁ କେବଳ କେତୋଟି ସୁବିଧା ସାଧନ ଅଧିକ ମିଳିଛି । କିନ୍ତୁ କୀଟ-ପତଙ୍ଗ କ୍ଷୁଦ୍ରଜୀବ ଓ ଅନ୍ୟପ୍ରାଣୀମାନଙ୍କ ତୁଳନାରେ ମଣିଷର ଅନେକ ଅଧିକ ଅନ୍ତର ରହିଛି । ତେଣୁ ଅନ୍ୟ ଜାତିର ପ୍ରାଣୀକୁ ଯଦି ମଣିଷ ଜନ୍ମ ମିଳିଯାଏ, ତେବେ ତାଙ୍କୁ ଅଧିକ ସୁବିଧା ଓ ଆନନ୍ଦ ମିଳିଯାଆନ୍ତା । ଯାହା ମଣିଷକୁ ସ୍ୱର୍ଗରେ ପହଞ୍ଚିବା ଓ ଦେବତା ହେବାଠାରୁ ଲକ୍ଷ ଲକ୍ଷ କୋଟି ଗୁଣଠାରୁ ବି ଅଧିକ ହୋଇଯିବ । ଯେଉଁ ଜୀବ ମଣିଷ ହୋଇ ଜନ୍ମହୁଏ, ତାହା ତା'ର ସୌଭାଗ୍ୟ ଏତେ ଅଧିକ ହେବ ଯାହା ଆମକୁ ସ୍ୱର୍ଗରେ ପହଞ୍ଚିବାଠାରୁ ନିଶ୍ଚୟ ଅଧିକ ହୋଇଯିବ ।

ଏମିତି ତ କେତୋଟି ଛୋଟ ମୋଟ ଅଭାବ, ଅସୁବିଧା ମଣିଷ ଜୀବନରେ ଲାଗିରହିଥାଏ । ସେହି ଦୁଃଖକୁ ନିରନ୍ତର ଭାବେ ଧରିରଖି କେତେକ ମଣିଷ ତିଳକୁ ତାଳ ମନେକରି ଚିରଦୁଃଖୀ ହୋଇ ରହନ୍ତି । ଏହାକୁ ଯଦି ବିଶାଳ ଦୃଷ୍ଟିରେ ଦେଖାଯାଏ, ଚିନ୍ତା କରାଯାଏ, ତେବେ ଏଥିରୁ ପ୍ରତୀତ ହେବ କି ଦୁଃଖୀ-ଦରିଦ୍ର ମନେ କରୁଥିବା ମଣିଷ ବି ଅନ୍ୟ ଜୀବଜନ୍ତୁଙ୍କ ତୁଳନାରେ ବହୁତ ଅଧିକ ସୁଖୀ ରହିଛି । ଏସବୁ ଜାଣି ଆମେ ନିଜକୁ ଅତ୍ୟଧିକ ଭଲପାଇଥାଉ । ବୟୋବୃଦ୍ଧ ଓ ରୁଗ୍ଣ ହେଲେ ବି ମରିବାକୁ କେବେ ଚାହୁଁନା ।

ଆଧାତ୍ମିକ ମାନ୍ୟତା ଅନୁସାରେ ପ୍ରାଣୀକୁ ଚୌରାଶି ଲକ୍ଷ ଗର୍ଭ ଭ୍ରମଣ କରିବା ପରେ ହିଁ ମଣିଷ ଜନ୍ମ ମିଳିଥାଏ । ଏହା ହେଉଛି- ତା'ର ପରୀକ୍ଷା ଦେବାର ବେଳ । ସେ ଉଚ୍ଚକୁ ଉଠି, ଆଗକୁ ବଢ଼ି, ଆହୁରି ଉଚ୍ଚକୁ ଯାଇ ଆହୁରି ବଡ଼ ହେବାକୁ ଯୋଗ୍ୟ କି ନୁହେଁ ? ଏହି କଥାର ପରୀକ୍ଷା ଦେବାକୁ ଜୀବ ମଣିଷ ଶରୀର ପାଇଥାଏ । ଯଦି ଏହି ପରୀକ୍ଷାରେ ସଫଳ ହୁଏ, ତେବେ ଭବିଷ୍ୟତରେ ସେ ଉଚ୍ଚସ୍ଥିତିରେ ରହି ସ୍ୱର୍ଗରେ ଦେବତାଙ୍କ କୋଳରେ ଜନ୍ମ ନେବାର ସୁଯୋଗ ପାଇଥାଏ । ନହେଲେ ସେ ପୁଣି ତା'ର ପୂର୍ବସ୍ଥିତିକୁ ଫେରି ଆସିଥାଏ ।

ଉଡ଼ାଜାହାଜ ଚଳାଉଥିବା 'ପାଇଲଟ' ପରୀକ୍ଷାରେ ପରୀକ୍ଷାର୍ଥୀ ହାତରେ ଉଡ଼ାଜାହାଜ ଦିଆଯାଏ । ସେ ତାକୁ ଆକାଶରେ ଉଡ଼େଇ ଦେଖେଇଦିଏ । ଯଦି ପରୀକ୍ଷାର୍ଥୀ ଠିକ୍ ଭାବରେ ଉଡ଼ାଜାହାଜ ଉଡ଼େଇ ପାରେ, ତେବେ ଭବିଷ୍ୟତରେ ତାକୁ ଉଡ଼ାଜାହାଜ ଚଳାଇବାକୁ ପାଇଲଟ୍ ଚାକିରି ମିଳିଯାଏ । ଅକୃତକାର୍ଯ୍ୟ ହୋଇଥିବା ପ୍ରାର୍ଥୀଠାରୁ ନିର୍ଦ୍ଧାରିତ ସମୟପରେ ଉଡ଼ାଜାହାଜକୁ ଛଡ଼େଇ ନିଆଯାଏ । ପୁଣି ତାକୁ ତାଲିମ ନେବାକୁ ତାଲିମ କେନ୍ଦ୍ରକୁ ପଠାଇ ଦିଆଯାଏ । ଠିକ୍ ସେହିପରି ଯେଉଁ ଜୀବ ନିର୍ଦ୍ଦିଷ୍ଟ ଜାତିରେ ଜନ୍ମ ହୋଇ ଦୀର୍ଘକାଳ ସେଇଠି ପଡ଼ି ରହିଥାଏ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ହିଁ ସେ ମାନବ ଜନ୍ମ ଲାଭ କରିଥାଏ । ଭଗବାନ ତା'ର ପ୍ରତ୍ୟେକ କାର୍ଯ୍ୟକଳାପକୁ ଅତି ସୂକ୍ଷ୍ମଭାବରେ ନିରୀକ୍ଷଣ କରୁଥା'ନ୍ତି । ତା'ର ବିଚାର ଓ କ୍ରୀୟାପଦ୍ଧତିକୁ ପରୀକ୍ଷା କରନ୍ତି । ଏହାକୁ ଆଧାର କରି ସେ ନମ୍ବର ବା ମାର୍କ ଦେଇଥା'ନ୍ତି । ଯଦି ଜୀବଟି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ଯୋଗ୍ୟ ହୋଇଯାଏ, ତେବେ ତାକୁ ଆଗକୁ ଯିବାପାଇଁ ଅଧିକ ଉଚ୍ଚସ୍ଥିତିରେ ସ୍ଥାପିତ କରିବା ଉଦ୍ଦେଶ୍ୟରେ ସୁବିଧା ସୁଯୋଗ ଦେଇଥା'ନ୍ତି ।

ସୃଷ୍ଟିର ଏକ ନିଶ୍ଚିତ ନିୟମ ହେଉଛି କି, ଯିଏ ଅଧିକରୁ ଅଧିକ ଉଚ୍ଚସ୍ତରକୁ ଯାଏ, ତା' କାନ୍ଧରେ ସେହିପରି ଅଧିକ ଦାୟିତ୍ୱ ଲଦି ଦିଆଯାଏ । ଚପରାସୀ ତୁଳନାରେ ଅଫିସର, ସୈନିକ ତୁଳନାରେ କ୍ୟାପ୍‌ଟେନ୍, ଶିଶୁ ତୁଳନାରେ ବୟସ୍କ ମଣିଷ, ନାଗରିକଙ୍କ ତୁଳନାରେ ନେତା ଓ ପଶୁ ତୁଳନାରେ ମାନବର ଦାୟିତ୍ୱ ଓ କର୍ତ୍ତବ୍ୟ ଯଥେଷ୍ଟ ଅଧିକ ଥାଏ । ପଦୋନ୍ନତି ଆଧାରରେ ଅଧିକ ଉତ୍ତରଦାୟିତ୍ୱ ବହନ କରିବା କ୍ଷମତା ବୃଦ୍ଧି ପାଉଥାଏ । ପଶୁଟି କୌଣସି ନୈତିକ ଏବଂ ସାମାଜିକ ମର୍ଯ୍ୟାଦା ପାଳନ କରିବାକୁ ବାଧ୍ୟ ନୁହେଁ । ସେ ଲଙ୍ଗଳା ହୋଇ ମନଇଚ୍ଛା ଏଣେତେଣେ ବୁଲିପାରେ । ଯେଉଁଠି ଇଚ୍ଛା, ସେଇଠି ଝାଡ଼ା ପରିସ୍ରା କରିପକାଏ । ପରଦ୍ରବ୍ୟକୁ ନିର୍ଭୟରେ ଖାଇଯିବାକୁ ସଂକୋଚ କରେ ନାହିଁ, କିନ୍ତୁ ମଣିଷକୁ ସେଭଳି ବ୍ୟବହାର କରିବାକୁ ଦିଆଯାଏ ନାହିଁ । ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ଉଚ୍ଛୃଙ୍ଖଳାକୁ ସହ୍ୟ କରାଯାଇପାରେ, କିନ୍ତୁ ଶିକ୍ଷକମାନଙ୍କର ଅନୁଶାସନହୀନତା କାର୍ଯ୍ୟକୁ ନିନ୍ଦା କରାଯିବା ସ୍ୱାଭାବିକ କଥା । ମଣିଷ ଯେଭଳି ସଂକୀର୍ଣ୍ଣତା ଓ ସ୍ୱାର୍ଥପରତା ଆଚରଣ କରେ, ସେହିଭଳି ଯଦି ଇନ୍ଦ୍ର, ବରୁଣ, ବାୟୁ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର ପ୍ରଭୃତି ଆଚରଣ କରନ୍ତି, ତେବେ ଏହି ସୃଷ୍ଟିର ଗତିବିଧି ମୁହୂର୍ତ୍ତକ ମଧ୍ୟରେ ଅସ୍ତବ୍ୟସ୍ତ ହୋଇଯିବ । ବଡ଼ପଣକୁ ହିଁ ଏକ ବଡ଼ ଦାୟିତ୍ୱ ମିଳିଥାଏ । ସେଥିରୁ ଯଦି ସାମାନ୍ୟ ଭୁଲ ହେଇଯାଏ, ତାହା ବହୁତ ବଡ଼ ଘାତକ ସାଜେ । ନେତାମାନଙ୍କର ଭୁଲଗୁଡ଼ିକ କୌଣସି ସମାଜ ବା ରାଷ୍ଟ୍ରପାଇଁ ବିପଦ ହେଇପାରେ । ଯେତେବେଳେ କି ସାଧାରଣ ନାଗରିକ ଦ୍ୱାରା ହେଇଥିବା ଭୁଲର ଫଳ ତା'ର ନିଜ ପରିବାର ପରିସର ମଧ୍ୟରେ ସୀମିତ ହୋଇ ରହିଥାଏ । ଏଥିପାଇଁ ଛୋଟ ବା ବଡ଼ ଭୁଲର ଫଳସ୍ୱରୂପ କଠିନ ଦଣ୍ଡ ଭୋଗିବାର ସ୍ଥିତିରେ ତାଙ୍କୁ ପହଞ୍ଚାଇ ଦେଇଥାଏ । ଫୌଜର କ୍ୟାପ୍‌ଟେନ୍‌ଙ୍କର ଦାୟିତ୍ୱହୀନତା ବା ଛୋଟ ଧରଣର ତ୍ରୁଟି ଦେଖିଲେ, ତାଙ୍କୁ ମଧ୍ୟ ଗୁଳିରେ ଉଡ଼େଇ ଦେବାକୁ ପଡ଼ିଥାଏ । ଅତ୍ୟାଚାରୀ-ଅନ୍ୟାୟୀ ବା ପ୍ରଜାପୀଡକ ଶାସକମାନଙ୍କୁ ମଧ୍ୟ ଏଭଳି ଦୁର୍ଗତିର ସମ୍ମୁଖୀନ ହେବାକୁ ପଡ଼ିଥାଏ ।

ଆମେମାନେ ନିଜର ବାସ୍ତବିକ ସ୍ଥିତିକୁ ଜାଣିରଖିବା ଉଚିତ । ବୁଦ୍ଧିମାନ ଭାବରେ ଜଣାଶୁଣା ମଣିଷର ସବୁଠାରୁ ବଡ଼ ମୂର୍ଖତା ହେଉଛି, ନିଜର ବାସ୍ତବିକ ସ୍ଥିତିକୁ ବୁଝିବାରେ ଭୁଲ କରିବା । ଏକଥା ମଧ୍ୟ ବିଚାର କରିବା କଥା ଯେ, ଯଦି ସମସ୍ତ ପ୍ରାଣୀ ଭଗବାନଙ୍କର ସନ୍ତାନ । ସେ ସମସ୍ତଙ୍କର ପିତା ହୋଇଥିବାରୁ ସମସ୍ତଙ୍କୁ

ସମାନ ଭାବରେ ଶ୍ରଦ୍ଧା କରନ୍ତି । ନ୍ୟାୟ ଓ ନିରପେକ୍ଷ ଏବଂ ସମଦର୍ଶୀ ହୋଇ ମଧ୍ଯ ଭଗବାନ ମଣିଷକୁ ସର୍ବାଧିକ ସୁବିଧା-ସୁଯୋଗ ଦେଇଛନ୍ତି କାହିଁକି ? କୌଣସି ମଣିଷ ପ୍ରତ୍ୟେକ ପିଲାଙ୍କୁ ପ୍ରାୟ ସମାନ ଦୃଷ୍ଟିରେ ଦେଖି ସମାନ ସୁବିଧା ଦେଇଥା'ନ୍ତି, ତେବେ ଭଗବାନ ତାଙ୍କର ସନ୍ତାନମାନଙ୍କ ମଧ୍ୟରେ ଏତେ ପାତର ଅନ୍ତର କରନ୍ତି କାହିଁକି ? ଯାହାକି ଆକାଶ ପାତାଳ ମଧ୍ୟରେ ପ୍ରାର୍ଥକ୍ୟ ସଂଗେ ସମାନ । ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ, ବ୍ୟାଙ୍କର ଚପରାସୀ ଓ ବ୍ୟାଙ୍କ ମ୍ୟାନେଜରଙ୍କ ସ୍ଥିତିକୁ ବୁଝିନେବାକୁ ହେବ । ମ୍ୟାନେଜରଙ୍କୁ ଅଧିକ ଦରମା ଓ ଅଧିକ ସୁବିଧା ମିଳିଥାଏ । ତା'ର କାରଣ ହେଲା, ତାଙ୍କୁ ଅଧିକ ଦାୟିତ୍ୱ ତୁଲେଇବାକୁ ପଡ଼ିଥାଏ । ତାଙ୍କ ଦସ୍ତଖତରେ ଲକ୍ଷ ଲକ୍ଷ ଟଙ୍କା ଏପଟ ସେପଟ ହେଇଯାଇପାରେ । ତେଣୁ ତାଙ୍କୁ ଉଚ୍ଚପଦବୀ ଓ ଉଚ୍ଚ ଦରମା ଦିଆଯାଇଥାଏ । ପୋଲିସ୍ ସୁପରିଟେଣ୍ଡେଣ୍ଟ, କଲେକ୍ଟର ପ୍ରଭୃତି ଉଚ୍ଚ ପଦାଧିକାରୀମାନଙ୍କ ହାତରେ ବଡ଼ ଅଧିକାର ଥାଏ । ସେମାନେ ଯଦି ତାଙ୍କର କ୍ଷମତାକୁ ସ୍ୱଚ୍ଛନ୍ଦତା ପୂର୍ବକ ଉପଯୋଗ କରିଚାଲନ୍ତି, ତେବେ ସଂକଟ ଉତ୍ପନ୍ନ ହୋଇଯିବ । ବ୍ୟାଙ୍କ ମ୍ୟାନେଜର ଯଦି ବ୍ୟାଙ୍କରେ ଥିବା ସମସ୍ତ ଅର୍ଥକୁ ନିଜର ଇଚ୍ଛାରେ ଖର୍ଚ୍ଚ କରିଦିଅନ୍ତି, ତେବେ ମହାଅଡୁଆ ସୃଷ୍ଟି ହୋଇଯିବ ।

ମୋଟାମୋଟି ଭାବରେ କୁହାଯାଇପାରେ ଯେ, ବ୍ୟାଙ୍କର ଉଚ୍ଚପଦାଧିକାରୀ ଚପରାସୀ ହାତରେ ଗୋଟାଏ ସାମାନ୍ୟ ଅସ୍ତ୍ର ଧରାଇ ଦେଇ ମ୍ୟାନେଜରଙ୍କୁ ଲକ୍ଷଲକ୍ଷ ଟଙ୍କା ଥିବା ଷ୍ଟ୍ରଙ୍ଗ୍‌ରୁମ୍‌ର ଚାବି ଧରାଇ ଦେଇଛନ୍ତି । ଏହା ଅନ୍ୟାୟ ଓ ପକ୍ଷପାତ ବିଚାର ହେଲା, କିନ୍ତୁ ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ, ସ୍ପଷ୍ଟ ହେଇଯିବ ଯେ, ଏଥିରେ ଅନ୍ୟାୟ ବୋଲି କିଛି କଥା ନାହିଁ । ଯେଉଁ ଦାୟିତ୍ୱ ମ୍ୟାନେଜରଙ୍କ କାନ୍ଧରେ ରହିଛି, ତାକୁ ପୂରଣ କରିବା ଉଦ୍ଦେଶ୍ୟରେ ଅଧିକାର ମଧ୍ୟ ମିଳିଛି । ସେହି ଅଧିକାରୀମାନଙ୍କୁ ନିଜ ପାଇଁ ତାହା ଉପଯୋଗ କରିବା ପାଇଁ ଅନୁମତି ନାହିଁ । ନିଜପାଇଁ ସେମାନେ ସୀମିତ ପରିମାଣରେ ଦରମା ପାଇଥା'ନ୍ତି । ଅପରିମିତ ସାଧନ ଏବଂ ଅଧିକାର ଯାହା ତାଙ୍କୁ ମିଳିଛି, ତାହା ଜନହିତ ପାଇଁ ଉଦ୍ଦିଷ୍ଟ । ନିର୍ଦ୍ଧାରିତ ଦରମା ବ୍ୟତୀତ ଅଧିକ କିଛି ଅର୍ଥ ଯଦି ସେ ବ୍ୟାଙ୍କରୁ ନେଇଯାଆନ୍ତି, ତେବେ ତାଙ୍କୁ ନ୍ୟାୟାଳୟ ଦ୍ୱାରା କଠୋର ଦଣ୍ଡରେ ଦଣ୍ଡିତ ହେବାକୁ ପଡ଼ିପାରେ ।

ଆମେ ମଣିଷକୁ ମାନବପ୍ରାଣୀ କହିଥାଉ । କିନ୍ତୁ ଜୀବନର ବସ୍ତୁସ୍ଥିତିକୁ ଲକ୍ଷ୍ୟ କଲେ ଜଣାଯାଏ, ଏକଥାର ସତ୍ୟତା ନାହିଁ । ଆମେ ବୁଝିଥାଉ ଯେ, ଯାହାକିଛି

ସୁଖ ସୁବିଧା ମିଳିଛି, ମଣଷ ତା'ର ବିରୁଦ୍ଧାଚରଣ କରି କେବଳ ନିଜର ସ୍ୱାର୍ଥରେ ତାକୁ ବିନିଯୋଗ କରୁଛି । ସୃଷ୍ଟିର ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ମଣିଷକୁ ଯେଉଁ ଅଧିକ ସୁବିଧା ପୂର୍ବକ ସ୍ଥିତି ମିଳିଛି, ତା'ର ଉପଯୋଗ ସେ ନିଜର କାମନା, ବାସନା ଓ ଇଚ୍ଛା ପୂରଣ ଦିଗରେ କରିବାକୁ ଉଚିତ ମନେ କରୁଛି । ତାହା ହିଁ କରୁଛି । ଆଜି ମଣିଷର ଗତିବିଧି ଓ ଆଚରଣକୁ ଲକ୍ଷ୍ୟ କଲେ ଜଣାପଡିବ ଯେ, ସେ ତା'ର ଇନ୍ଦ୍ରୀୟ ସୁଖ ଅଥବା ଲୋଭ ମୋହ ଏବଂ ଅହଂକାରର ବଶିଭୂତ ହୋଇ ସେଥିରେ ହିଁ ସୀମିତ ରହିଯାଉଛି । ସେ ଯାହାକିଛି ଭାବୁଛି, ଯାହା କିଛି କରୁଛି, ତାହା କେବଳ ସେହି ସୀମା ଭିତରେ ହିଁ ଭ୍ରମଣ କରି ଚାଲିଛି । ତା'ର ଏହି ସୀମିତ ପରିଧି ଅଧିକରୁ ଅଧିକ ବୃଦ୍ଧି ପାଇଲେ, ତାହା ନିଜର ପତ୍ନୀ ପର୍ଯ୍ୟନ୍ତ ଓ ତାପରେ ନିଜର ସନ୍ତାନମାନଙ୍କ ପର୍ଯ୍ୟନ୍ତ ଯାଇପାରୁଛି । ପୂରା ପରିବାର ପର୍ଯ୍ୟନ୍ତ ବି ତାହା ଲମ୍ବିଯାଇ ପାରୁନାହିଁ । ମାତା ପିତା, ଭାଇ ଭଉଣୀ, କକା ଖୁଡ଼ି, ଭାଇ ଭାଉଜ ଓ ଜେଜେ ଜେଜୀ ପ୍ରଭୃତି କୁଟୁମ୍ବର ଘନିଷ୍ଠ ସଦସ୍ୟମାନଙ୍କ ପାଖକୁ ସେ ସ୍ୱାର୍ଥର ପରିଧି ଯାଇପାରୁ ନାହିଁ । ଆତ୍ମୀୟ ସ୍ୱଜନମାନଙ୍କ ସହିତ ବରଂ ସେ ସ୍ୱାର୍ଥପୂର୍ଣ୍ଣ ବ୍ୟବହାର କରିବାକୁ କୁଣ୍ଠିତ ହୁଏନାହିଁ ।

କ'ଣ ଏପରି ମଣିଷ ଜଣେ ଦାୟିତ୍ୱବାନ ହେଇପାରେ ? ଏହି ଘୃଣିତ ସ୍ଥିତିର ପରିଚୟ ଦେବାପାଇଁ ଭଗବାନ ତାକୁ ଅନ୍ୟପ୍ରାଣୀ ତୁଳନାରେ ଏତେ ଅଧିକ ସୁବିଧାଜନକ ସ୍ଥିତି ପ୍ରଦାନ କରିଛନ୍ତି ? ଏହା ଏକ ମହତ୍ତ୍ୱପୂର୍ଣ୍ଣ ତଥା ବିଚାରଯୋଗ୍ୟ ପ୍ରଶ୍ନ । ଏହି ପ୍ରଶ୍ନର ଉତ୍ତର ଉପରେ ହିଁ ମାନବ ଜୀବନର ସଫଳତା ଓ ବିଫଳତା ନିର୍ଭର କରେ । ଜନ୍ମଦିନ ଅବସରରେ ଏହି ପ୍ରଶ୍ନର ସଠିକ ଉତ୍ତରକୁ ଖୋଜି ପାଇବା ହେଉଛି ସବୁଠାରୁ ବଢ଼ିଆ ଓ ଉତ୍ତମ ସମୟ । ନିଜର ସମସ୍ତ ବୁଦ୍ଧିମତ୍ତା, ସମଗ୍ର ଦୂରଦର୍ଶିତା, ପ୍ରତିଭା ଓ ମନୋଭାବନାକୁ ଏହି ସମସ୍ୟାର ସମାଧାନ ଦିଗରେ ଲଗାଇବା ହେଉଛି, ସବୁଠାରୁ ଭଲ ଅବସର ।

ଦୈନନ୍ଦିନ ଜୀବନରେ ଆସୁଥିବା ଅନେକ ଛୋଟମୋଟ ସମସ୍ୟାର ସମାଧାନ ପାଇଁ ଆମେ କେତେ ତତ୍ପରତା ଏବଂ ବୁଦ୍ଧିମତ୍ତାର ପରିଚୟ ଦେଇଥାଉ । ବଡ଼ ବଡ଼ ସମସ୍ୟାର ସମ୍ମୁଖୀନ ହେଇ ଯେଉଁ ଚତୁରତାର ଆଧାରରେ ଆମେ ସମାଧାନ କରିଥାଉ, ସେହିଭଳି କ'ଣ ଆମେ "ଜୀବନୋଦ୍ଦେଶ୍ୟ ଓ ତା'ର ସଫଳତା" ସଂପର୍କରେ ଉଠିଥିବା ପ୍ରଶ୍ନର ଉତ୍ତର ବାହାର କରିପାରିବା ନାହିଁ ?

ନିଶ୍ଚୟ କରିପାରିବା । ପ୍ରକୃତରେ ଆମେ ସେ ସଂପର୍କରେ ପୂର୍ବରୁ କେବେ ବିଚାର କରିନାହୁଁ । ବାହାର କଥା ଉପରେ ଆମେ ଚିନ୍ତା କରିଛୁ, ବିଚାର କରିଛୁ, କିନ୍ତୁ ଆତ୍ମୋଦ୍ଦେଶ୍ୟ ସଂପର୍କରେ କେବେ ଦୃଷ୍ଟି ପକାଇ ନାହୁଁ । ଯଦି ଟିକିଏ ଧ୍ୟାନ ଏ ଦିଗରେ ଦେଉଥା'ନ୍ତୁ, ତେବେ ଆମର ସ୍ଥିତି ଅଲଗା କିଛି ହେଇଯାଇଥା'ନ୍ତା । ଫଳରେ ଆମେ ଆଜିଦିନ ଅପେକ୍ଷା ବହୁତ ଆଗକୁ ବଢ଼ିଯାଇ ଉଚ୍ଚସ୍ତରରେ ପହଞ୍ଚିଯାଇଥା'ନ୍ତୁ ।

ଆମର ସମାଜରେ ହସଖୁସୀରେ ଅନେକ ପର୍ବପର୍ବାଣୀ ପାଳନ କରାଯାଏ । ହୋଲି, ଦୀପାବଳୀ ଓ ଦଶହରା ଭଳି ଅବସରରେ ବହୁତ ମଜା ମଉଜ ହେଇଥାଏ । ଘର ସଜାଇବା, ନୂଆ ପୋଷାକ କିଣିବା, ସ୍ୱାଦିଷ୍ଟ ଭୋଜନ ବ୍ୟବସ୍ଥା କରିଥାଉ । ମେଳାରେ ବୁଲିବା, ସାଙ୍ଗସାଥୀ ବନ୍ଧୁ ବାନ୍ଧବମାନଙ୍କ ସହିତ ମିଳିବା ତାଙ୍କ ସହିତ ଉପହାର ଆଦାନପ୍ରଦାନ କରିବା ଭଳି ଅନେକ କିଛି ଆନନ୍ଦଦାୟକ କାମ କରିଥାଉ । ଏହି ଉତ୍ସବ ଗୁଡ଼ିକ କୌଣସି ନା' କୌଣସି ଏକ ବଡ଼ ସଫଳତାର ସ୍ମୃତିରେ ହିଁ ପାଳନ କରାଯାଇଥାଏ । ଲଙ୍କା ବିଜୟ କରିବା ପରେ ଶ୍ରୀରାମଚନ୍ଦ୍ରଙ୍କ ସଫଳତା ପୂର୍ବକ ଅଯୋଧ୍ୟା ଯାତ୍ରା କରିଥିଲେ । ତେଣୁ ସାଧାରଣ ପ୍ରଜାମାନେ ଖୁସିରେ ଦୀପ ଜାଳିଥିଲେ । ସେହିଦିନଠାରୁ ଦୀପାବଳୀ ଉତ୍ସବ ପାଳିତ ହେଇଆସୁଛି । ପ୍ରହ୍ଲାଦ ଅଗ୍ନି ପରୀକ୍ଷାରେ ସଫଳତା ଲାଭ କରିଥିଲା, ତା'ର ନୃଶଂସ ଅସୁର ପିତା ହିରଣ୍ୟକଶିପୁକୁ ଭଗବାନ ନୃସିଂହ ପରାସ୍ତ କରିଥିଲେ, ଏହି ଧର୍ମ ବିଜୟରୁ ହିଁ ହୋଲି ଉତ୍ସବର ସୃଷ୍ଟି ।

ଶୁମ୍ଭ-ନିଶୁମ୍ଭ, ମଧୁକୈଟଭ, ମହିଷାସୁର ଇତ୍ୟାଦି ଅସୁରଙ୍କୁ ବଧକରି ମାତା ଭଗବତୀ ଦୂର୍ଗା ଜୟ ବିଜୟ ଧ୍ୱଜା ଉଡାଇଥିବା ଅବସରରୁ ବିଜୟାଦଶମୀ ଉତ୍ସବ ପାଳିତ ହେଇଆସୁଛି । ଶ୍ରୀରାମଙ୍କ ଜନ୍ମ ରାମନବମୀ. ଗଙ୍ଗା, ଗାୟତ୍ରୀଙ୍କ ଜନ୍ମ ଗଙ୍ଗା ଦଶହରା, କୃଷ୍ଣ ଜନ୍ମ ଜନ୍ମାଷ୍ଟମୀ, ଗୀତାଜୟନ୍ତୀ, ସରସ୍ୱତୀଙ୍କ ଜନ୍ମ ବସନ୍ତ ପଞ୍ଚମୀ, ଶିବଙ୍କର ଜନ୍ମ ଶିବରାତ୍ରୀ ଭାବରେ ବିଖ୍ୟାତ । ଅନ୍ୟ ଦେବତା ଓ ମହାପୁରୁଷଙ୍କ ଜୟନ୍ତୀଗୁଡ଼ିକୁ ବି ଆମେ ଏହିଭଳି ବିଭିନ୍ନ ଦିବସରେ ପାଳନ କରିଥାଉ । ଏହିପରି ମହାନ୍ ଆତ୍ମାଙ୍କର ପୃଥିବୀ ଅବତରଣ ମାନବ ଜାତିପାଇଁ ଗୋଟିଏ ଗୋଟିଏ ସୌଭାଗ୍ୟର ଦିବସ ଭାବରେ ପରିଗଣିତ ହୋଇଯାଇଛି । ତେଣୁ ସେହି ସଫଳତାକୁ ସ୍ମରଣ କରିବା ଉଦ୍ଦେଶ୍ୟରେ ଆମେ ଏଭଳି ଉତ୍ସବ ପାଳନ କରି ଆସୁଛୁ ।

ମାନବ ଜୀବନରେ ଆମର ନିଜର ଅବତରଣ ବି ଏହିଭଳି ଗୋଟିଏ ବଡ଼ ସଫଳତା । ଚୌରାଶି ଲକ୍ଷ ଜନ୍ମପରେ ବହୁକଷ୍ଟ ଓ ଅସୁବିଧାର ସମ୍ମୁଖୀନ ହୋଇ ଆମେ ସମସ୍ତ ଅନ୍ଧକାରକୁ ପରାସ୍ତ କରି ଯେଉଁ ଦିନ ମଣିଷ ଶରୀର ଧାରଣ କରି ଧରାପୃଷ୍ଠରେ ଅବତରଣ କଲେ, ତାହା ନିଶ୍ଚୟ ଏକ ସୌଭାଗ୍ୟ ପ୍ରାପ୍ତିର ଦିବସ । ଏହା ମଧ୍ୟ ଆମପାଇଁ ଏକ ବିରାଟ ସଫଳତା ବୋଲି ଧରିନେବାକୁ ହେବ । କହିବାକୁ ଗଲେ, ଅସାଧାରଣ ବିଜୟର ଏହା ହେଉଛି ମହାନ ପର୍ବ । ସମାଜ ଓ ଜାତି ଦୃଷ୍ଟିରେ ମହାପୁରୁଷ ଓ ଦେବତାମାନଙ୍କର ଜୟନ୍ତୀଗୁଡ଼ିକ ଯେଭଳି ମହତ୍ତ୍ୱପୂର୍ଣ୍ଣ । ବ୍ୟକ୍ତିଗତ ଦୃଷ୍ଟିରେ ନିଜର କ୍ଷୁଦ୍ର ଅବତରଣ ମଧ୍ୟ ଠିକ୍ ସେତିକି ମଙ୍ଗଳମୟ । ଆମର ନିଜ ସଫଳତା ଓ ନିଜର ବିଜୟ ଛଡ଼ା ଅନ୍ୟକିଛି ହୋଇ ନପାରେ । ତେଣୁ ନିଜର ଜନ୍ମଦିନ ନିଜପାଇଁ ସବୁଠାରୁ ବଡ଼ ଖୁସିର ଦିନ ହୋଇଥାଏ । ବିଭିନ୍ନ ଉତ୍ସବ ଯେମିତି ପ୍ରତିବର୍ଷ ପାଳିତ ହେଇଥାଏ । ଠିକ୍ ସେହିପରି ଆମେ ନିଜର ପ୍ରିୟଜନମାନଙ୍କର ଜନ୍ମଦିନକୁ ପାଳନ କରିବା ଉଚିତ । ସଂସାର ଯାକର ସଭ୍ୟଦେଶରେ ଏହି ପ୍ରଥା ପ୍ରଚଳିତ ହୋଇ ଆସୁଛି । ଏହି ଅବସରପାଇଁ ସଭ୍ୟସମାଜରେ ପ୍ରତ୍ୟେକ ଲୋକ ବର୍ଷକ ପୂର୍ବରୁ ପ୍ରସ୍ତୁତି ଆରମ୍ଭ କରି ଦେଇଥା'ନ୍ତି । ସେଦିଦିନ ନିଜ ନିଜର ପ୍ରଚଳିତ ପ୍ରଥାନୁସାରେ ଏବଂ ନିଜ ସ୍ଥିତି ଅନୁରୂପ ଏହି ଉତ୍ସବକୁ ହର୍ଷୋଲ୍ଲାସରେ ପାଳନ କରିଥା'ନ୍ତି ।

ଆମଦେଶରେ ମଧ୍ୟ ଏହି ପ୍ରଥା କେଉଁଯୁଗରୁ ରହି ଆସିଛି । ମଧ୍ୟକାଳୀନ ଅନ୍ଧକାର ଭରା ଅବ୍ୟବସ୍ଥାରେ ଆମେ ଆମର ଅନେକ ବିଶେଷତାକୁ ହରେଇ ଦେଇଥିଲୁ । ତେଣୁ ଏହି ପ୍ରେରଣା ପର୍ବର ସ୍ୱରୂପକୁ ମଧ୍ୟ ଭୁଲି ଯାଇଥିଲୁ । ଏବେ ସମୟ ଆସିଛି, ଏହି ମହତ୍ତ୍ୱପୂର୍ଣ୍ଣ ପରମ୍ପରାର ପୁନଃ ପ୍ରଚଳନ କରାଯାଉ ।

ଜନ୍ମଦିନ ଅବସରରେ ବନ୍ଧୁମିଳନ, ଦୀପଦାନ, ଜଳପାନ, ପୁଷ୍ପ ଉପହାର, ଗାୟନ ବାଦନ, ପରିଭ୍ରମଣ, ଗୃହ ସାଜସଜା, ଯଜ୍ଞ, ପୂଜା ଇତ୍ୟାଦି ବିଧି ନିଜର ପରିସ୍ଥିତି ଆର୍ଥିକ ଅବସ୍ଥାକୁ ବିଚାର କରି ସେହି ଅନୁରୂପ ପାଳନ କରାଯାଇ ପାରିବ । ଜନ୍ମଦିନ ହେଉଛି, ଏକ ଧାର୍ମିକ କର୍ମକାଣ୍ଡ । ତା'ର ବିଧି ବିଧାନ ଓ ସେହି ବିଧାନର ବ୍ୟାଖ୍ୟା "ଜନ୍ମ ଦିବସ ଉତ୍ସବ କେମିତି ପାଳିବେ", ନାମକ ପୁସ୍ତକରେ ପ୍ରକାଶିତ ହୋଇ ସାରିଛି । ଏହି ପୁସ୍ତକ ମଥୁରାରୁ ମଗାଇ ପାଇ ପାରିବେ ଏବଂ ସେହିଦିନର

ଧାର୍ମିକ କ୍ରୀୟାକଳ୍ପ ବଡ଼ ଆକର୍ଷକ ଏବଂ ପ୍ରେରଣାପ୍ରଦ ଢ଼ଙ୍ଗରେ କରାଯାଇପାରିବ । ଏହି ପ୍ରକାର ଆୟୋଜନ, ଜନ୍ମଦିନ ପାଳନ କରୁଥିବା ବ୍ୟକ୍ତିର ଜୀବନ ଉପରେ ପ୍ରେରଣା ଭରିଦିଏ । ଏହି ଉତ୍ସବରେ ସମ୍ମିଳିତ ବ୍ୟକ୍ତିମାନଙ୍କୁ ମଧ୍ୟ ପ୍ରକାଶ ଦେଉଥିବା ସିଦ୍ଧ ପ୍ରାପ୍ତ ହୋଇଥାଏ । ବ୍ୟକ୍ତି ଓ ସମାଜର ଭବ୍ୟ ଓ ନବନିର୍ମାଣରେ ଏହି ଆୟୋଜନ ଗୁଡ଼ିକଦ୍ୱାରା ବଡ଼ ପ୍ରଗତି ହୋଇପାରିବ । ତେଣୁ ଆମମାନଙ୍କ ଭିତରୁ ପ୍ରତ୍ୟେକଙ୍କୁ ନିଜର ଜନ୍ମଦିନକୁ ଉଲ୍ଲାସପୂର୍ଣ୍ଣ ବାତାବରଣରେ ପାଳନ କରିବା ଉଚିତ । ଏଥିରେ ଅନ୍ୟ ସାଙ୍ଗସାଥୀ, ବନ୍ଧୁ ବାନ୍ଧବମାନଙ୍କୁ ସାମିଲ କଲେ, ସେମାନେ ମଧ୍ୟ ଏଥିରୁ ଅବଶ୍ୟ ପ୍ରେରଣା ଲାଭ କରିପାରିବେ ।

ଜନ୍ମଦିନ ଅବସରରେ ପ୍ରବୁଦ୍ଧ ବ୍ୟକ୍ତିମାନଙ୍କ ଦ୍ୱାରା ମାନବ ଜୀବନର ଉଦ୍ଦେଶ୍ୟ ଓ ଏହାର ସଫଳତାର ମାର୍ଗ ବିଷୟରେ ପ୍ରେରଣାପ୍ରଦ ପ୍ରବଚନ କରିବାର ବ୍ୟବସ୍ଥା ହେବା ଉଚିତ ହେବ ।

ଏହି ଆୟୋଜନ ଫଳରେ ଜୀବନର ସ୍ୱରୂପ, ଜୀବନର ଉଦ୍ଦେଶ୍ୟ, ଜୀବନର ସଦୁପଯୋଗ ଓ ତା'ର ସଫଳତାର ମାର୍ଗ ଜାଣିବାରେ ଅତ୍ୟନ୍ତ ସହାୟକ ହେଇପାରିବ । ଯଦି ଭୁଲାମଣିଷ ନିଜର ଲକ୍ଷ୍ୟ ପଥରେ ସୁବ୍ୟବସ୍ଥିତ ରୀତି ଅନୁସାରେ ଚାଲିବ, ତେବେ ଏହି ସଂସାର, ସମାଜ ଓ ସଂସ୍କୃତିର ସ୍ୱରୂପ ହିଁ ବଦଳିଯିବ । ଏହି ଧରିତ୍ରୀରେ ସ୍ୱର୍ଗ ଅବତରଣ କରି ଯୁଗନିର୍ମାଣର ସମ୍ଭାବନା ବଢ଼ିଯିବ ।

ଯେଉଁ ବ୍ୟକ୍ତିର ଜନ୍ମଦିନ ପାଳନ କରାଯିବ, ତାଙ୍କ ପାଇଁ ଆବଶ୍ୟକ ହେଉଛି- ସେ ଏକାନ୍ତରେ ବସି ଆତ୍ମୋଚିନ୍ତନ କରିବ । ନିଜକୁ ଏହି ପ୍ରଶ୍ନ ପଚାରିବ ଯେ-

**୧) ମୋ ଜୀବନର ଉଦ୍ଦେଶ୍ୟ କ'ଣ ?**

**୨) ସେହି ଉଦ୍ଦେଶ୍ୟକୁ ପୂରଣ କରିବା ପାଇଁ କ'ଣ ମୁଁ ଉଚିତ ପ୍ରଯତ୍ନ କରୁଛି କି ?**

**୩) ଯଦି ନା', ତେବେ ସେହି ଭୁଲକୁ କିପରି ସୁଧାରିବି ?**

ଏହି ତିନିଟି ପ୍ରଶ୍ନ ଉପରେ ଯେତେ ଗଭୀର ଭାବରେ ଚିନ୍ତା କରାଯିବ, ଯେତେ ଠିକ୍ ଉତ୍ତର ଖୋଜି ପାଇବ, ଯେତେ ସାହସର ସହିତ ଭୁଲକୁ ସୁଧାରିବା ପାଇଁ କେନ୍ଦ୍ରିତ କରାଯାଇ ପାରିବ, ସେତିକି ହିଁ ଜନ୍ମଦିନ ପାଳନର ବାସ୍ତବିକ ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇପାରିବ । ଉତ୍ସବ-ପର୍ବ ପର୍ବାଣୀ କେବଳ ହା-ହା, ହି ହି କରି ଧମାକା ସୃଷ୍ଟି କରିବା ଉଦ୍ଦେଶ୍ୟରେ ପାଳନ କରାଯାଏ ନାହିଁ । ବରଂ ତା' ପଛରେ ଗୋଟିଏ

ମହତ୍ତ୍ୱପୂର୍ଣ୍ଣ ପ୍ରେରଣା ଛପି ରହିଥାଏ । ସେହି ସନ୍ଦେଶକୁ ଶୁଣିବା, ବୁଝିବା, ହୃଦୟଙ୍ଗମ କରିବା ହିଁ ଏହି ଉତ୍ସବ ଆୟୋଜନର ବାସ୍ତବିକ ଉଦ୍ଦେଶ୍ୟ । ବ୍ରହ୍ମୋପରୀର ତ ଏହି ପ୍ରୟୋଜନର କଳାତ୍ମକ, ଆକର୍ଷକ, ମନୋରଞ୍ଜକ ଏବଂ ଗ୍ରାହୀ ପ୍ରସ୍ତୁତ କରିବାକୁ ଦେଇଥାଏ । ଆମର ଏହି ଜନ୍ମଦିନ ଉତ୍ସବ ବି ହର୍ଷୋଉଲ୍ଲାସ ଭରା ହେଉ । ଆୟୋଜନକୁ କଳାତ୍ମକ କରାଯାଉ, କିନ୍ତୁ ଏକାନ୍ତରେ ବସି ଆତ୍ମୋଚିନ୍ତନ ଏବଂ ଆତ୍ମନିରୀକ୍ଷଣ କରି ଆତ୍ମନିର୍ମାଣ ଓ ଆତ୍ମବିକାଶ ପାଇଁ ଯୋଜନାବଦ୍ଧ ଭାବୀ କାର୍ଯ୍ୟକ୍ରମ ପ୍ରସ୍ତୁତ ପ୍ରତି ଧ୍ୟାନ ଦେବା ଅତ୍ୟନ୍ତ ଜରୁରୀ । ଏହାଦ୍ୱାରା ଏହି ଆୟୋଜନର ବାସ୍ତବିକ ପ୍ରୟୋଜନ ପ୍ରମାଣିତ ହେବ । ଏହି ପ୍ରୟୋଜନ ଯେତିକି ପୂର୍ଣ୍ଣ ହେଇପାରେ, ବୁଝିବାକୁ ହେବ ଯେ, ଜନ୍ମଦିନ ପାଳନ ସେତିକି ସାର୍ଥକ ହେଇପାରିବ ।

ଉପରଲିଖିତ ତିନିଟି ପ୍ରଶ୍ନର ଉତ୍ତର ଆମକୁ ଏହି ଆଧାରରେ ବାହାର କରିବାକୁ ପଡ଼ିବ ଯେ, ନ୍ୟାୟକାରୀ, ସମଦର୍ଶୀ, ନିରପେକ୍ଷ, ନିୟମବଦ୍ଧ ପରମାତ୍ମାଙ୍କ ସୃଷ୍ଟିରେ ଅନ୍ୟ ସମସ୍ତ ପ୍ରାଣୀମାନଙ୍କ ତୁଳନାରେ ମଣିଷର ଏତେଗୁଡ଼ିକ ସୁଖ ସୁବିଧା, ଏତେଗୁଡ଼ିଏ ବିଭୂତି, ଏତେ ସୁଯୋଗ କାହିଁକି ପ୍ରଦାନ କରିଛନ୍ତି ? ଏହି ସୃଷ୍ଟିରେ ସମସ୍ତ କ୍ରୀୟାକଳାପ ପରିପୂର୍ଣ୍ଣ ନିୟମବଦ୍ଧତା ଓ ବିବେକଶୀଳତାର ଆଧାରରେ ନୀତି ଓ ଧର୍ମର ଆଧାରରେ ଚାଲି ଆସୁଛି । ମଣିଷକୁ ନିରୁଦ୍ଦେଶ୍ୟରେ ଏହି ସବୁ ସୁବିଧା ମିଳିପାରିବ ନାହିଁ, ଯାହା ଆଜି ଉପଲବ୍ଧ । ମଣିଷକୁ ମିଳିଥିବା ସୁବିଧା ଗୁଡ଼ିକର ପଛରେ ତାଙ୍କର କିଛି ବିଶେଷ ପ୍ରୟୋଜନ ରହିଛି । ଭଗବାନ ନିଜର ସୃଷ୍ଟିକୁ ସୁନ୍ଦର, ସୁଖୀ, ସୁବ୍ୟବସ୍ଥିତ ଏବଂ ସୁବିକଶିତ ଭାବରେ ତିଆରି କରିବା ପାଇଁ ନିଜର ଏକ ବିଶେଷ ସହାୟକ ଭାବେ, କାରିଗର ରୂପେ ମଣିଷକୁ ସୃଜନ କରିଛନ୍ତି । ତାଙ୍କ ଉପରେ ଏହି ଉତ୍ତରଦାୟିତ୍ୱ ମଧ୍ୟ ପ୍ରଦାନ କରିଛନ୍ତି । ଯାହା ଫଳରେ ସେ ସଂସାରକୁ ଅଧିକ ସୁରମ୍ୟ, ଅଧିକ ସରସ କରି ଗଢ଼ି ତୋଳିପାରିବ । ତା' ପାଖରେ ଥିବା ପ୍ରତିଭାକୁ ଉପଯୋଗ କରିପାରିବ । ଏଥିପାଇଁ ଭଗବାନ ଅନେକଗୁଡ଼ିଏ ବିଶେଷତାରେ ପରିପୂର୍ଣ୍ଣ କରି ଦେଇଛନ୍ତି ।

ମଣିଷର ବ୍ୟକ୍ତିଗତ ଆବଶ୍ୟକତାଗୁଡ଼ିକୁ ପରମାତ୍ମା ଏତେ ପରିମାଣରେ ସୀମିତ ରଖିଛନ୍ତି ଯେ, ବଡ଼ ଆରାମରେ ସେ ସାମାନ୍ୟ ସମୟ ଓ ଶ୍ରମ ଫଳରେ ତାକୁ ଉପାର୍ଜନ କରିପାରିବ । ଅନ୍ୟ ପ୍ରାଣୀମାନଙ୍କୁ ଏଥିପାଇଁ ଏଣେତେଣେ ଘୂରି

ବୁଲିବାକୁ ପଡ଼ିଥାଏ । ତାଙ୍କୁ ଆହାର, ଜଳ ଓ ବାସସ୍ଥାନ ପାଇଁ ବହୁତ ପରିଶ୍ରମ କରିବାକୁ ପଡ଼ିଥାଏ । ଏଥିପାଇଁ ତାଙ୍କୁ ନିଜର ସମସ୍ତ ସମୟ ଓ ଶ୍ରମ ଲଗାଇବାକୁ ପଡ଼ିଥାଏ । କିନ୍ତୁ ମଣିଷ କେବେ ଏଥିପାଇଁ ଚିନ୍ତା କରିବାକୁ ପଡ଼େନାହିଁ । ସମସ୍ତ ସୁବିଧା ସାମଗ୍ରୀ ସହଜ ଓ ଶସ୍ତାରେ ଗୋଟିଏ ସ୍ଥାନରୁ ତାକୁ ମିଳିଯାଉଛି । ଏଥିପାଇଁ ଏଣେତେଣେ ବୁଲିବାକୁ ପଡ଼େନାହିଁ । ମଣିଷର ଶାରୀରିକ ଓ ମାନସିକ ପରିଶ୍ରମର ମୂଲ୍ୟ ଏତେ ପରିମାଣରେ ଅଧିକ ଯେ, ନିଜ ନିର୍ବାହ ପ୍ରଶ୍ନର ଉତ୍ତର ଅତ୍ୟନ୍ତ ସହଜରେ ତାକୁ ମିଳିଯାଏ । ଅଧାକିଲୋ ଚାଉଳ, ଦଶମିଟର କପଡ଼ା, ଖଣ୍ଡେ ବିଛଣା, ମୁଣ୍ଡ ଢାଙ୍କିବାକୁ ଛପର ଘରଖଣ୍ଡେ ହିଁ ମଣିଷ ପାଇଁ ସ୍ୱାଭାବିକ ଆବଶ୍ୟକ । ଘର ସଂସାର କରିବାପାଇଁ ପତ୍ନୀକୁ ମଧ୍ୟ ସ୍ୱାବଲମ୍ବନ ପୂର୍ବକ ଜୀବନ ନିର୍ବାହ କରିବାର କ୍ଷମତା ମିଳିଛି । ଛୋଟଛୋଟ ପିଲାଙ୍କର ଅତିକମ୍ ଆବଶ୍ୟକତାକୁ ପିତାମାତା ଦୁହେଁ ମିଶି ଅତି ସହଜରେ ପୂର୍ଣ୍ଣ କରିପାରନ୍ତି । ଘନ ଜଙ୍ଗଲରେ ସାଧନ ବିହୀନ ପରିସ୍ଥିତିରେ ଆଦିବାସୀମାନେ ମଧ୍ୟ ଅତି ସହଜରେ ସାଧାରଣ ଜୀବନ ନିର୍ବାହ ପାଇଁ ଆବଶ୍ୟକ ସୁବିଧାକୁ ଯୋଗାଡ଼ କରିନେଇ ପାରୁଛନ୍ତି । ଶିକ୍ଷିତ ଏବଂ ସାଧନସମ୍ପନ୍ନ ପରିସ୍ଥିତିରେ ରହୁଥିବା ଲୋକମାନଙ୍କପାଇଁ ନିଜର ଆବଶ୍ୟକତା ପୂରଣ କରିବାପାଇଁ କୌଣସି ପ୍ରକାର ଅସୁବିଧା ହିଁ ନାହିଁ । ଏଭଳି ଅନୁକୂଳତା ଭଗବାନ ଏଥିପାଇଁ ସୃଷ୍ଟି କରିଛନ୍ତି, ଯେମିତି କି ମଣିଷ ଅଳ୍ପ ସମୟ ସାମାନ୍ୟ ଶ୍ରମ ବିନିମୟରେ ନିଜର ନିର୍ବାହ କାର୍ଯ୍ୟ କରିପାରିବ । ଫଳରେ ବଳକା ସମୟ ଓ ଶ୍ରମ ତଥା ପ୍ରତିଭା ବଳରେ ସେ ଲୋକମଙ୍ଗଳ ଓ ଈଶ୍ୱରୀୟ ପ୍ରୟୋଜନର ପୂର୍ତ୍ତି କାର୍ଯ୍ୟ କରିପାରିବ ।

ଏହି ଈଶ୍ୱରୀୟ ଇଚ୍ଛା ମାନବ ଜୀବନର ଦାୟିତ୍ୱ ଅଟେ । ବ୍ୟାଙ୍କ ମେନେଜର, କଲେକ୍ଟର, କ୍ୟାପଟେନ୍ ଇତ୍ୟାଦି ବଡ଼ ବଡ଼ ଅଧିକାରୀମାନେ ଯେଉଁ ସବୁ ସୁବିଧା ଲାଭ କରିଥା'ନ୍ତି, ସେଥିପାଇଁ ତା ପଛରେ ଲୋକ ବ୍ୟବସ୍ଥାର ପ୍ରୟୋଜନାହିଁ ଲୁଚି ରହିଥାଏ । ଲୋକବ୍ୟବସ୍ଥା ହିଁ ଏହି ଅଧିକାରୀମାନଙ୍କର ଦାୟିତ୍ୱ । ଏହା ହେଉଛି, ସେମାନଙ୍କର ଧର୍ମ ବା କର୍ତ୍ତବ୍ୟ । ସେମାନେ ତାକୁ ଠିକ୍ ଭାବରେ ପାଳନ କରନ୍ତି । ତେଣୁ ସୂତ୍ର ସଞ୍ଚାଳକମାନଙ୍କର ସହାନୁଭୂତି ଏବଂ ପ୍ରଶଂସାର ଅଂଶ ଭାବରେ ପରିଚିତ ହୁଅନ୍ତି । ଯଦି ସେମାନେ ଏଥିରୁ ବ୍ୟତିକ୍ରମ କରନ୍ତି, ନିଜ କର୍ତ୍ତବ୍ୟକୁ ଭୁଲି ମିଳିଥିବା ସୁବିଧାଗୁଡ଼ିକୁ ନେଇ ଲୋକହିତର ଉପେକ୍ଷା କରନ୍ତି ଏବଂ ନିଜର ବ୍ୟକ୍ତିଗତ ସ୍ୱାର୍ଥ

ସାଧନରେ ଲାଗି ରହନ୍ତି, ତେବେ ଏହା ବହୁତ ବଡ଼ ଖରାପ କଥା ହେବ । ସେମାନଙ୍କର ଆତ୍ମା ଧିକ୍କାର କରିବ । ଲୋକନିନ୍ଦା ହେବ । ସୂତ୍ର ସଞ୍ଚାଳକଙ୍କ ଘୃଣାର ପାତ୍ର ହେଇ ଦଣ୍ଡନୀତିର ଫାନ୍ଦରେ ନିଶ୍ଚୟ ଫସିଯିବେ ।

ଦେଖିବାକୁ ହେବ ଯେ, ଆମେ ସେଭଳି କିଛି ଅନୁଚିତ କାର୍ଯ୍ୟରେ ଲାଗି ରହିନାହୁଁ ତ ! ଜୀବନ ନିର୍ବାହ ପାଇଁ ସାମାନ୍ୟ ଆବଶ୍ୟକତା, ସିଧାସାଧା ଓ ସରଳ ଆବଶ୍ୟକତାଗୁଡ଼ିକ କେବେ ଅଧିକ କୃତ୍ରିମ ଭାବରେ ବଢ଼େଇ ଚଢ଼େଇ ନେଇଯାଉ ନାହୁଁ ତ ? ବିଳାସ ଜୀବନ ଓ ଅହଂକାର ପୂର୍ଣ୍ଣ ଦୁର୍ବୁଦ୍ଧି ଦ୍ୱାରା ପ୍ରେରିତ ହୋଇନାହିଁ ତ ? ବଦଖର୍ଚ୍ଚୀ ଢ଼ଙ୍ଗରେ ଆବରଣ ଦେଇ ନିଜର ଇଚ୍ଛା ପୂର୍ତ୍ତି ପାଇଁ ଦିନରାତି ଚିନ୍ତିତ ରହିବାକୁ ପଡୁଛି କି ? ଅନ୍ୟକୁ ବୋକା ମନେକରି ନିଜର ଜୀବନକୁ ଏମିତି ଆଡମ୍ବରପୂର୍ଣ୍ଣ ଓ ଅସ୍ୱାଭାବିକ କରି ଦେଇନାହିଁତ ? ଲୋଭ ମୋହ ଓ ତୃଷ୍ଣାର ପିଶାଚ ମୋତେ ଏତେ ଜୋରରେ ଭିଡ଼ି ଧରିନେଇଯାଇ ନାହିଁ ତ, ଯାହାଦ୍ୱାରା ଅଧିକ ଭୋଗ ଓ ଅଧିକ ସଂଗ୍ରହ ପାଇଁ ପାଗଳଭଳି ସବୁବେଳେ ସାରା ମସ୍ତିଷ୍କର ବଦ ଖର୍ଚ୍ଚ କରିବାକୁ ପଡୁଛି । ଚଳିଯିବାପାଇଁ ଯାହା ସୁବିଧା ଦରକାର, ତାହା ମିଳିଯିବା ପରେ ବି କ'ଣ ଆମେ ତୃଷ୍ଣାପକ୍ଷୀ ହେଇଯାଇଛୁ ? ଯଦି ହଁ, ତେବେ ବୁଝିବା ଦରକାର କି ଆମେ ଉତ୍ତରଦାୟିତ୍ୱର ରାଜମାର୍ଗକୁ ଛାଡ଼ି ଆମେ ଅନ୍ୟ କୌଣସି ଭୟାନକ ଭୁଲର କଣ୍ଟକିତ ରାସ୍ତାରେ ଚାଲୁଛୁ ।

ଯେଉଁ ଦେଶ ବା ସମାଜରେ ଆମେ ଜନ୍ମ ନେଇଛୁ, ତା'ର ଜୀବନ ସ୍ତର ଅନୁସାରେ ଆମକୁ ଜୀବନ ବିତେଇବା ଉଚିତ । ଯଦି ନୈତିକତା ଏବଂ ମଣିଷପଣିଆ ପ୍ରତି ବିମୁଖ ହୋଇ ନିଜର ପ୍ରତିଭା ବଳରେ କିଛି ଉପାର୍ଜନ କଲେ, ତାକୁ ପୂର୍ଣ୍ଣମାତ୍ରାରେ ନିଜପାଇଁ ଖର୍ଚ୍ଚ କରିବାର ଅଧିକାର ଆମକୁ ମିଳିନାହିଁ । ଏମିତି ତ ବଳଦ ଜମିରୁ ଫସଲ ଉତ୍ପାଦନ କରେ । ଯଦି ସେହି ଫସଲକୁ ପୁଣି ବଳଦ ଖାଇଯାଏ । ଗାଈ-ମଇଁଷି ନିଜର ଦୁଧକୁ ନିଜେ ପିଇ ଯାଆନ୍ତି । ମେଣ୍ଢା ନିଜେ ନିଜର କମ୍ବଳକୁ ଘୋଡେଇ ହେଇଯାଏ । ଗଛ ନିଜର ଫଳକୁ ନିଜେ ଖାଇଯାଏ । ମେଘ ତା'ର ପାଣିକୁ ନିଜ ଘରେ ଜମାକରି ରଖେ । ଏପରି ଅବ୍ୟବସ୍ଥା ଯଦି ଚାଲେ, ତେବେ ସଂସାରର ସର୍ବନାଶ ହିଁ ହୋଇଯିବ । ଯେଉଁ ମଣିଷ ନିଜର ରୋଜଗାରକୁ ଯଦି ନିଜ ପାଇଁ ପ୍ରଯୁକ୍ତ କରିବାକୁ ଚାହେଁ, ତାକୁ ଅନାବଶ୍ୟକ ମାତ୍ରାରେ



ଜମା କରିବା କାରଣରୁ ସେ ଈଶ୍ୱରଙ୍କ ଆଇନ ଭାଙ୍ଗି ଦେଇଛି । ପରିଗ୍ରହ ଓ ଅପବ୍ୟୟ ନିଶ୍ଚିତ ରୂପେ ଏକ ବିରାଟ ପାପ । ଏହା ଆଇନ-କାନୁନ ଦୃଷ୍ଟିରେ ଏକ ଦଣ୍ଡନୀୟ କାର୍ଯ୍ୟ ବୋଲି ବିବେଚନା କରାଯାଏ ।

ଜୀବନୋଦ୍ଦେଶ୍ୟର ସଫଳତା ପାଇଁ ସବୁଠୁ ଆଗେ ଏହି ପଦକ୍ଷେପ ଗ୍ରହଣ କରିବାକୁ ପଡିବ ଯେ, ତୃଷ୍ଣା ଓ ବାସନାର ପିଶାଚ କବଳରୁ ମୁକ୍ତି ପାଇବା ପାଇଁ ସାହସପୂର୍ଣ୍ଣ ପ୍ରଯତ୍ନ ଆରମ୍ଭ କରିବା । ସାଧା ଜୀବନ ଜୀଇଁବା । ଯେଉଳି ସାଧାରଣ ଭାରତୀୟ ନାଗରିକ ବଞ୍ଚୁଛନ୍ତି, ତାଙ୍କରି ସ୍ତରକୁ ଆସିବା । ଧନବାନ ମଣିଷର ତୋଷଣରେ ଶୋଷିତ ଲୋକମାନଙ୍କୁ ଶିଶୁ ଓ ବୃଦ୍ଧ ମନେକର । ଯାହା ସଂଗ୍ରହ ହେଇସାରିଛି, ତାକୁ ସତ୍‌କର୍ମରେ ଲଗାଅ । ଯେତିକି ଚଳିବା ପାଇଁ ଦରକାର, ସେତିକି ରୋଜଗାର ଓ ସଂଗ୍ରହ କରି ରଖ । ଯଦି ଭୌତିକ ବୈଭବ ଲକ୍ଷ୍ୟ ଥାଏ, ତେବେ ପରମାତ୍ମାଙ୍କ ପାଇଁ ସମୟ ସୁଯୋଗ ମିଳିବ ନାହିଁ । ଯଦି ଲକ୍ଷ୍ୟ ଆତ୍ମକଲ୍ୟାଣ

ଓ ଈଶ୍ୱରୀୟ ପ୍ରୟୋଜନର ପୂର୍ତ୍ତି ଉଦ୍ଦେଶ୍ୟରେ ଥାଏ, ତେବେ ଆମର ତୃଷ୍ଣା କମିଯିବ ଓ ଏତିକି ପରିମାଣରେ ଅର୍ଥ ଉପାର୍ଜନ ହିଁ ପର୍ଯ୍ୟାପ୍ତ ପ୍ରତୀତ ହେବ । ଯାହାକି ଜୀବନ ନିର୍ବାହ ପାଇଁ ଅନିର୍ବାର୍ଯ୍ୟ ରୂପେ ଆବଶ୍ୟକ । ଧନ ପ୍ରଧାନ ଜୀବନ ଲକ୍ଷ୍ୟକୁ ବଦଳାଇ ଯଦି ତାକୁ ପରାମାର୍ଥ ପ୍ରଧାନ କରାଯାଏ, ତେବେ ଶେଷରେ ଜୀବନ-କ୍ରମରେ ପରିବର୍ତ୍ତନ ହେବା ସହଜ ହୋଇଯିବ । ଜନ୍ମଦିନର ଅବସରରେ ଆମେ ନିଜର ଦୃଷ୍ଟିକୋଣକୁ ଶରୀର ପ୍ରଧାନ, ଭୋଗବାଦୀ, ଲୋଭୀ ଓ ମୋହଗ୍ରସ୍ଥ ନରହିବା ପାଇଁ ସଂକଳ୍ପ କରିବା ଉଚିତ । ଜୀବନୋଦ୍ଦେଶ୍ୟ ଅନୁରୂପ ବିଚରଣା ଏବଂ କ୍ରିୟା-ପଦ୍ଧତିକୁ ଆପଣେଇ ନେବାର ବ୍ରତ ଗ୍ରହଣ କରିବା ଉଚିତ ।

ଆମର ସବୁଠାରୁ ବଡ଼ ବୁଦ୍ଧିମତ୍ତାର ଓ ସବୁଠାରୁ ବଡ଼ ଦୂରଦର୍ଶିତାର ମାର୍ଗ ଏହା ଯେ, ଆମେ ମାନବଜୀବନ ଭଳି ଅନୁପମ ସୌଭାଗ୍ୟର ସଦୁପଯୋଗ କରିବା । ଭଗବାନଙ୍କର ସେହି ପୁଣ୍ୟ ପ୍ରୟୋଜନରେ ପୂର୍ଣ୍ଣ କରିବା, ଯେଉଁଥିପାଇଁ ପ୍ରାଣୀମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥିତି ଆମକୁ ପ୍ରଦାନ କରାଯାଇଛି । ଯଦି ଏହି ଲକ୍ଷ୍ୟକୁ ଉପେକ୍ଷା କରାଯାଏ ଓ ଅବିବେକୀ ପଡ଼ୋଶୀଙ୍କୁ ଅନୁସରଣ କରି ତୃଷ୍ଣା ଓ ବାସନରେ ଭରିଥିବା ଆବର୍ଜନା ଓ ଦୁର୍ବଳ ଜୀବନ ପଦ୍ଧତି ଆପଣେଇବା, ତେବେ କହିବାକୁ ହେବ ଯେ, ସଂସାର ଦୃଷ୍ଟିରେ ଆମେ ସଫଳ ବା ଚତୁର ହେଇପାରିବା ସତ; କିନ୍ତୁ ଆତ୍ମାର ଦୃଷ୍ଟିରେ ଆମେ ଅସଫଳ ଓ ଅବିବେକୀ ମଣିଷ ହୋଇ ରହିଯିବା ।

ଯାହାର ଅନ୍ତଃକରଣରେ ଏହି ନିଷ୍ଠା ଗଭୀର ଭାବରେ ଜମି ରହିଯିବ ଯେ, ମୋର ଜୀବନ କୌଣସି ମହାନ ପ୍ରୟୋଜନ ଉଦ୍ଦେଶ୍ୟରେ ରହିଛି ଏବଂ ଉପାର୍ଜନ ଶରୀର ରକ୍ଷାପାଇଁ ଅଳ୍ପକିଛିର ଆବଶ୍ୟକତା ରହିଛି, ସେହି ବ୍ୟକ୍ତି ଜୀବନକୁ ସାର୍ଥକ କରିବାପାଇଁ କିଛି ଚିନ୍ତା କରିପାରିବ । ଯଦି ନିଷ୍ଠା ନଥାଏ, କେବଳ ଲୋଭ କାରଣରୁ ଏ' ପ୍ରକାର ବିଚାର କରାଯାଏ, ତେବେ ଯଶ ପୌରୁଷ ପାଇଁ ଯଥା କଥା କି ତଥାକଥିତ ପରମାର୍ଥ କେବଳ ବିଜ୍ଞାପିତ ହେବ । ଆସ୍ଥାର ଅଭାବରେ ବାସ୍ତବିକତାର ଉଦୟ ହେବନାହିଁ । ମାତ୍ର ଏଥିପାଇଁ ଆତ୍ମାକୁ ତ ସନ୍ତୋଷ ମିଳିବ ନାହିଁ, ତା' ସହିତ ଆମର ଘଟ ଓ ଘଟବାସୀ ପରମାତ୍ମା ବି ପ୍ରସନ୍ନ ହୋଇପାରିବେ ନାହିଁ ।

ଯେତେବେଳେ ଦୃଷ୍ଟିକୋଣ ଭୌତିକବାଦୀ ନହୋଇ ଆଧ୍ୟାତ୍ମବାଦୀ ହୋଇଯାଏ, ତାର ସମସ୍ତ ଇଚ୍ଛା, ସମସ୍ତ କାମନା, ସମସ୍ତ ଭାବନା ଓ ପ୍ରତ୍ୟେକ

ପ୍ରକ୍ରିୟାର ଢ଼ାଞ୍ଚା ବଦଳିବାରେ ଲାଗିଯିବ । ତେବେଯାଇ କୌଣସି ଯୋଜନା ସହଜ ସ୍ୱାଭାବିକ ରୀତିରେ ଜୀବନ-କ୍ରମରେ ଅଧିକରୁ ଅଧିକ ଆଧ୍ୟାତ୍ମିକତାର ସମାବେଶ ହେବାରେ ଲାଗିବ । ସ୍ୱତଃ ଏକଥାରୁ ଅନୁଭୂତି ହୁଏ କି, ନିଜର ପ୍ରତ୍ୟେକ ମୁହୂର୍ତ୍ତ, ପ୍ରତ୍ୟେକ ଜୀବନୋଦ୍ଦେଶ୍ୟର ପୂର୍ତ୍ତିର ପଥରେ ଦ୍ରୁତଗତିରେ ଅଗ୍ରସର ହୁଏ । ଏହି ପରିପ୍ରେକ୍ଷୀରେ ଯିଏ ରହେଁ, ସିଏ ହିଁ ଏଭଳି ହୋଇପାରେ, ଯାହା କରୁ, ଯାହା ହେବା ଉଚିତ୍ । ଜୀବନନୋଦ୍ଦେଶ୍ୟର ପୂର୍ତ୍ତି ଉଦ୍ଦେଶ୍ୟରେ କିଛି ନିର୍ଦ୍ଦିଷ୍ଟ କାମ ଏହି ସ୍ଥିତିର ମନୋଭୂମିରେ ସମ୍ଭବ ହେଇପାରେ । ଜନ୍ମଦିନ ଅବସରରେ ଆମେ ନିଜ ମଧ୍ୟରେ ଏମିତି ଏକ ଭାବନାତ୍ମକ ପରିବର୍ତ୍ତନ ଆଣିବା ଦିଗରେ ପ୍ରଯତ୍ନ ହେବା ଉଚିତ ।

ଦ୍ୱିତୀୟ ପଦକ୍ଷେପ ଏହି ବିଚରଣକୁ କାର୍ଯ୍ୟରୂପେ ପରିଣତ କରିବାପାଇଁ ଏକ ବ୍ୟବସ୍ଥିତ କାର୍ଯ୍ୟପଦ୍ଧତି ନିର୍ଦ୍ଧାରିତ କରିବାର ଅଛି । ଆମେ ନିଜର ସାଧାରଣ ଜୀବନ-କ୍ରମ ଅସାମାନ୍ୟ ଦୃଷ୍ଟିକୋଣ ସହିତ ବଞ୍ଚିବାର ପ୍ରସ୍ତୁତି କରିବା ଉଚିତ । ସାଧାରଣ କାମଧନ୍ଦା, ବିକ୍ରୀ, ଦୋକାନଦାରୀ, ଚାକିରି ଇତ୍ୟାଦି କରୁଥିବା ଅବସ୍ଥାରେ ସେମାନେ ମଧ୍ୟ ଉତ୍କୃଷ୍ଟ ଜୀବନଯାପନ କରିପାରିବେ । ଯଦି ଆମେ ଆଦର୍ଶବାଦିତା ଭାବନାରେ ବୁଡ଼ିରହିଥିବା ତେବେ ତ ଆମର ସାଧାରଣ କାର୍ଯ୍ୟ ବି ସୃଷ୍ଟିର ସୁନ୍ଦର, ସମ୍ମୁନ୍ନତ ଓ ସୁଖୀ କରାଇଥିବା ପରମାର୍ଥ ସିଦ୍ଧ ହୋଇଯିବ । କାର୍ଯ୍ୟର ଫଳ ଭାବନା ଅନୁସାରେ ହୋଇଥାଏ । ଯଦି ଆମେ ସାଧାରଣ ଜୀବନ-କ୍ରମରେ ମହାନ ଆଦର୍ଶ ଏବଂ ଉଦ୍ଦେଶ୍ୟର ସମନ୍ୱୟ କରିନେବା, ତେବେ ସେମାନଙ୍କର ସାଧାରଣ କାର୍ଯ୍ୟ ହିଁ ନିଜର ଉତ୍କୃଷ୍ଟ ସ୍ୱରୂପର କାରଣ, ଆମପାଇଁ ପୁଣ୍ୟ-ପରମାର୍ଥର ସାଧନା, ସଂସାରର କଲ୍ୟାଣକାରକ ହେଇଯିବ । ଏଥିପାଇଁ ଦ୍ୱିତୀୟ କାର୍ଯ୍ୟ ଏହା ହେବ ଯେ, ଆମେ ନିଜର ପ୍ରତ୍ୟେକ କାର୍ଯ୍ୟରେ ଉତ୍କୃଷ୍ଟତାର ଦୃଷ୍ଟିକୋଣ ସମନ୍ୱିତ କରିବା ଉଚିତ । ଯାହା କରିବା ତାକୁ ଆଗ ବିଚାର କରିବାକୁ ହେବ ଯେ, ଏହା ଆମ ନିଜର ବ୍ୟକ୍ତିଗତ ସ୍ୱାର୍ଥର ପୂର୍ତ୍ତିପାଇଁ ନୁହେଁ । ବରଂ ଏହି ବିଶ୍ୱ-ବସୁନ୍ଧରାକୁ ଅଧିକ ସୁନ୍ଦର, ଅଧିକ ସମୁନ୍ନତ, ଅଧିକ ସୁଖୀ କରିବା ପାଇଁ କରିଚାଲିଛି । ଏହି ଭାବନା ନିଶ୍ଚୟ ଆମର ପ୍ରତ୍ୟେକ କ୍ରିୟାକଳାପର ଆଦର୍ଶ ହେଇଯିବ ।

ପରମାର୍ଥିକ ଜୀବନଯାପନର ଶୁଭାରମ୍ଭ ନିଜର ବ୍ୟକ୍ତିତ୍ୱକୁ ଓ ଉଜ୍ଜ୍ୱଳ, ସୁସଂସ୍କୃତ, ପବିତ୍ର ଏବଂ ପ୍ରଖର କରବାଦ୍ୱାରା ହିଁ ସମ୍ଭବ ହେବ । ସଂସାରକୁ ଭଲ

ଭାବରେ ଗଢ଼ି ତୋଳିବାପାଇଁ ଆମକୁ ଭଲ ହେବାକୁ ପଡ଼ିବ । ନିଜେ ନିଜକୁ ଆମେ ଯେତେ ଭଲକରି ଗଢ଼ିବା, ସଂସାରରେ ସେତିକି ଅଂଶ ଉତ୍ତମ ହେଇଯିବ । ଏହି ଶୃଙ୍ଖଳା ଆଗକୁ ବଢ଼ିଯାଇ ଜଣଙ୍କଠାରୁ ଅନ୍ୟଜଣକୁ ଭଲ ମଣିଷକରି ଚାଲିବ । ନିଜର ଆନ୍ତରିକ ସ୍ଥିତିକୁ ଉଚ୍ଚରେ ରଖି ଆମେ ବସ୍ତୁତଃ ସଂସାରର ମହାନତମ ସେବା କରିବାର ଶ୍ରେୟପ୍ରାପ୍ତ ହେଇଥାଉ ।

ଆମର ବ୍ୟକ୍ତିତ୍ୱ ଶରୀର, ମନ ଓ ଆତ୍ମା ଏହି ତିନିଟି ଆଧାର ଉପରେ ଦଣ୍ଡାୟମାନ । ଏହି ତିନିଟିକୁ ପବିତ୍ର ଓ ପ୍ରକାଶପୂର୍ଣ୍ଣ କରିବାପାଇଁ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗର ତିନିଟି ସାଧନାର କ୍ରମକୁ ଆପଣେଇ ନେବାକୁ ପଡ଼ିବ । ଜୀବନ ସାଧନାର ଅର୍ଥ- ନିଜର ପ୍ରତ୍ୟେକ ଗତିବିଧିକୁ ଆଦର୍ଶବାଦିତା ଦ୍ୱାରା ପରିପୂର୍ଣ୍ଣ କରି ରଖିବା । କର୍ମଯୋଗୀ ହୋଇ ଶରୀରକୁ, ଜ୍ଞାନଯୋଗୀ ହୋଇ ମନକୁ ଓ ଭକ୍ତିଯୋଗୀ ହୋଇ ଆତ୍ମାକୁ ପରିଷ୍କୃତ କରାଯାଏ । ଆମର ପ୍ରତ୍ୟେକ ଶାରୀରିକ କ୍ରିୟା, କର୍ତ୍ତବ୍ୟପାଳନ ପାଇଁ ପ୍ରତ୍ୟେକ ବିଚାରଣା ସତ୍ୟ ଓ ବିବେକାନୁମୋଦିତ ପାଇଁ ଏବଂ ପ୍ରତ୍ୟେକ ଭାବନା ଆତ୍ମୀୟତା ଏବଂ ପ୍ରେମ-ପ୍ରୀତିର ଅଭିବର୍ଦ୍ଧକ କରିବାପାଇଁ । ମନେ ରଖିବାକୁ ହେବ ଯେ, ଶରୀର, ମନ ଓ ଆତ୍ମା ଏହି ତିନିଟି ଆଧାରରେ ସେହି ଦିଗକୁ ଅଗ୍ରସର ହେଉଛୁ । ଯାହାପାଇଁ ଈଶ୍ୱରଙ୍କ ଇଚ୍ଛା ଏବଂ ପ୍ରେରଣା ରହିଛି । ଏହି ମାର୍ଗରେ ଚାଲି କରି ଆମେ ଜୀବନୋଦ୍ଦେଶ୍ୟର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଇପାରିବା ।

ଏହି ତିନିଟି ଯୋଗାଭ୍ୟାସକୁ ପ୍ରତ୍ୟେକ ମୁହୂର୍ତ୍ତରେ ନିଜର ବିଚାର ଓ କାର୍ଯ୍ୟରେ ଉତ୍କୃଷ୍ଟତାର ସମାବେଶ କରି ତାକୁ ପୂର୍ଣ୍ଣମାତ୍ରାରେ ସମ୍ପନ୍ନ କରାଯାଇପାରିବ । କିନ୍ତୁ ସେଇଥିପାଇଁ କିଛି ବିଶେଷ କ୍ରିୟାବିଧାନ ବି ନିର୍ଦ୍ଧାରିତ ହୋଇ ରହିଛି । ଏହାକୁ ଏକ ଅଭ୍ୟାସ ଭାବରେ ପ୍ରତିଦିନ କାର୍ଯ୍ୟାନ୍ୱିତ କରାଯିବ । ଫଳରେ ସାଧନାମୟ ଜୀବନଯାପନର ଉଦ୍ଦେଶ୍ୟ ବହୁତ ପରିମାଣରେ ପୂର୍ଣ୍ଣ ହୋଇଯାଇ ପାରିବ ।

୧) କର୍ମଯୋଗର ଜୀବନ-କ୍ରମରେ ସମାବେଶ ଏହିପରି ହୋଇଥାଏ କି ଆମେ ନିଜର ପ୍ରତ୍ୟେକ ବିଚାରଣା ଓ କ୍ରିୟା-ପଦ୍ଧତି ଉପରେ କଡ଼ା ନଜର ରଖିବାକୁ ହେବ । ସେମାନଙ୍କର ଯେଉଁ ଦୋଷ ହେଉ ନା କାହିଁକି ? ତା'ର ନିବାରଣ ଓ ଯେଉଁ ସଦ୍‌ଗୁଣଗୁଡ଼ିକ କମ୍ ଅଛି, ତା'ର ସଂବର୍ଦ୍ଧନ କରିବାପାଇଁ ନିରନ୍ତର ପ୍ରଯତ୍ନଶୀଳ



ରହିବାକୁ ହେବ । ଆଧ୍ୟାତ୍ମ ଆମ ଜୀବନଶୈଳୀରେ କୋଣ ଅନୁକୋଣ ଓ ପ୍ରତିକ୍ଷଣରେ ସମାବେଶ ହେବା ଉଚିତ । ପୂଜା କୋଠରୀରେ ମହନ୍ତ ହେଇ ଆମେ ବଜାରରେ କଂସାବାସନ ବିକ୍ରୟ ଦୋକାନ ଖୋଲିବା ଭଳି ଦୋମୁହାଁ ନୀତି ଆମର ଆତ୍ମିକ ପ୍ରଗତିର ସାମାନ୍ୟତମ ସହାୟକ ସିଦ୍ଧ ହୋଇ ପାରିବ ନାହିଁ । ଉପାସନା ଏକ ଆତ୍ମିକ ବ୍ୟାୟାମ ପରି ଟିକେ ବିଳମ୍ବରେ ଆସିପାରେ, କିନ୍ତୁ ସାଧନା ତ ପ୍ରତ୍ୟେକ ମୁହୂର୍ତ୍ତରେ କରିବା ଜିନିଷ । ଆତ୍ମକଲ୍ୟାଣ ପାଇଁ ସାଧନାର ମାର୍ଗକୁ ଆପଣେଇ ନେବାକୁ ହୁଏ । ଉପାସନା ହେଉଛି ସାଧନାର ବହୁତ ଛୋଟ ଅଙ୍ଗ । ଜୀବନର ସାର୍ଥକତା ଲକ୍ଷ୍ୟରେ ଏକା ଉପାସନାର ବଳରେ ହୋଇ ନପାରେ । ଏଥିରେ ସାଧନାର ସମାବେଶ ରହିବା ଅତ୍ୟନ୍ତ ଜରୁରୀ । ଏହି ଜୀବନ ସାଧନାର ନାମ ହେଉଛି- କର୍ମଯୋଗ । ଆମର ପ୍ରତ୍ୟେକ କ୍ରିୟା ଯଦି ଆଦର୍ଶବାଦିତାର ଅନୁରୂପ ହୁଏ, ତେବେ ବୁଝିବାକୁ ହେବ ଯେ, ଆମେ କର୍ମଯୋଗର ସାଧନା କରିଚାଲିଛୁ ।

କର୍ମଯୋଗର ଏକ ମହତ୍ତ୍ୱପୂର୍ଣ୍ଣ ସାଧନ ପ୍ରକ୍ରିୟା ହେଉଛି- ପ୍ରତ୍ୟେକ ଦିନକୁ

ଗୋଟିଏ ନୂଆ ଜନ୍ମ ଓ ପ୍ରତ୍ୟେକ ରାତିକୁ ଗୋଟାଏ ନୂଆ ମୃତ୍ୟୁ ବୁଝିବାକୁ ହେବ । ଏହି ନିଷ୍ଠାକୁ ଅନ୍ତଃକରଣରେ ଗଭୀର ଭାବରେ ସମାବିଷ୍ଟ କରାଯାଏ । ପ୍ରାତଃକାଳ ଯେମିତି ଆମର ଆଖି ଖୋଲିଦିଏ, ବିଛଣା ଉପରେ ପଡ଼ି ରହିଥିବା ଅବସ୍ଥାରୁ ହିଁ ଏ' ଭାବନା ଆସିବା କଥା- ଆଜି ଦିନଟି ମୋ ପାଇଁ ଗୋଟିଏ ନୂଆ ଜନ୍ମ । ଦିନକୁ ଭଲଭାବରେ ବ୍ୟତୀତ କରିବା । ଏ' ସମ୍ପର୍କରେ ଦିନଯାକର ଯୋଜନା ପ୍ରସ୍ତୁତ କରାଯିବା ଉଚିତ । ଆଜିର ଧନ ଓ ସମୟକୁ ମୁଁ କେଉଁ ଭାବରେ ବ୍ୟୟ କରିବି ? ସମସ୍ତ ସମୟକୁ ସଦୁପଯୋଗ କରିବା ଭାବନା ନେଇ ଦିନଚର୍ଯ୍ୟା ଆରମ୍ଭ କରିବା । ତା' ସଙ୍ଗେ ସଙ୍ଗେ ଧ୍ୟାନ ରଖିବାକୁ ହେବ ଯେ, ଅନାବଶ୍ୟକ କାର୍ଯ୍ୟରେ ମୋର ଗୋଟିଏ ବି ପଇସା ଖର୍ଚ୍ଚ ହେଇ ନଯାଉ । ଠିକ୍ ସେହିପରି ଉପଯୋଗୀ କାର୍ଯ୍ୟରେ ଖର୍ଚ୍ଚ କରିବାରେ ମୁଁ କୃପଣ ହେଇ ନଯାଏ । ଧନ ଓ ସମୟ ଏହି ଦୁଇଟି ଶକ୍ତି ମଣିଷ ପାଖରେ ବହୁତ ମହତ୍ତ୍ୱପୂର୍ଣ୍ଣ ହେଇ ରହିଥାଏ । ତାକୁ ଅନୁପଯୁକ୍ତ ରୀତିରେ ଖର୍ଚ୍ଚ ନକରି ଉପଯୁକ୍ତ କାର୍ଯ୍ୟରେ ଲଗାଇଲେ, ଆମର ଜୀବନର ସାର୍ଥକତାର ପଥ ସହଜ ଓ ପ୍ରସସ୍ତ ହୋଇପାରିବ । ତେଣୁ ପ୍ରାତଃକାଳରେ ଦିନଯାକର ଏମିତି ଯୋଜନା, ଦିନଚର୍ଯ୍ୟା ତିଆରି କରି ନେବା, ଯେପରି କି ଆମ ଜୀବନରେ ଆଦର୍ଶବାଦିତାର, ଉତ୍କୃଷ୍ଟତାର ପୂରା ସମାବେଶ ହେଇପାରିବ । ଏହି ଦିନଚର୍ଯ୍ୟାକୁ ଅତି କଠୋରତା ସହ ପାଳନ କରିବା ପାଇଁ ସେହି ସମୟରେ ହିଁ ନିଶ୍ଚୟ କରି ନେବାକୁ ହେବ । ବର୍ତ୍ତମାନ ସ୍ଥିତିରେ ଆଦର୍ଶବାଦିତାର ଯେତିକି ସମାବେଶ ଜୀବନ-କ୍ରମରେ ହେଇପାରେ, ଆରମ୍ଭରୁ ସେତିକି ହିଁ କରିରଖିବା । ଆଜି ଉଚ୍ଚସ୍ତରରେ ପହଞ୍ଚି ନପାରିବା ସମ୍ଭବ ନହେଲେ, ତାହା ଧୀରେ ଧୀରେ ଚାଲୁରହିବ । ଧୀରେ ଧୀରେ ଆଗକୁ ମାଡ଼ିଚାଲିବା । ଦିନଚର୍ଯ୍ୟାରେ ଏତେ ପରିମାଣରେ ଆଦର୍ଶବାଦିତା ସମନ୍ୱିତ କରାଯାଉ, ଯେତିକି ଆଜିର ସ୍ଥିତିରେ ସମ୍ଭବ ହେବ, କିନ୍ତୁ ଯାହା ନିଶ୍ଚୟ କରିନିଆଯାଇଛି, ତାକୁ କଡ଼ାକଡ଼ି ଭାବରେ ଅବଶ୍ୟ ପାଳନ କରାଯାଉ । ସଂକଳ୍ପକୁ ପୂରଣ କରିବା ହେଉଛି, ଆତ୍ମବଳକୁ ବୃଦ୍ଧି କରିବାର ଏକମାତ୍ର ଅଭ୍ୟାସ । ନିଶ୍ଚୟ କରିବା ଓ ତାକୁ ଅଧାରୁ ଛାଡ଼ିବା ହେଉଛି, ଦୁର୍ବଳତା । ଏହି ଦୁର୍ବଳତା, ମନୋବଳକୁ ଦିନକୁ ଦିନ ତଳକୁ ଖସାଇ ନେଇଯାଏ । ତେଣୁ ଆତ୍ମବଳ ବୃଦ୍ଧିର ଅଭ୍ୟାସ ପ୍ରତି ପ୍ରାତଃକାଳରେ କରାଯାଏ । ନିଶ୍ଚୟକୁ ଦିନସାରା କଠୋରତା ପୂର୍ବକ ପାଳନ

କରିଚାଲିବାକୁ ତତ୍ପର ତ ହେବାକୁ ହିଁ ପଡ଼ିବ ।

ମଣିଷ ଭିତରେ ଅନେକ ଦୋଷ ଭରି ରହିଥାଏ । ଅନେକ ଗୁଣର ଅଭାବ ବି ରହିଥାଏ । ଆମେ ନିରନ୍ତର ଏହି ଦୁଇଟି ସମସ୍ୟାକୁ ସମାଧାନ କରିବାରେ ଲାଗିରହିବା । ଯେଉଁ ଦୋଷଗୁଡ଼ିକ ରହିଛି, ତାକୁ ହଟାଇ ଦିଆଯାଉ ଆଉ ଯେଉଁ ଗୁଣଗୁଡ଼ିକର ଅଭାବ ରହିଛି, ତାକୁ ବୃଦ୍ଧି କରାଯାଉ । ଏହି ଉଭୟ ପକ୍ଷୀୟ ଚେଷ୍ଟା ଯଦି ନିୟମିତ ଓ ବ୍ୟବସ୍ଥିତ ରୀତିରେ ଚାଲୁରହେ, ତେବେ ତ ଆମର କର୍ମଯୋଗ ସାଧନା ଦ୍ରୁତଗତିରେ ସଫଳତା ଆଡ଼କୁ ଅଗ୍ରସର ହେଇ ଚାଲିବା ।

ସାଧାରଣତଃ ଲୋକେ କାନୁନୀ ଅପରାଧକୁ ପାପ ବୋଲି ଧରି ନେଇଥା'ନ୍ତି । ଚୋରି, ଡକାୟତି, ହତ୍ୟା, ବ୍ୟଭିଚାର, ବେଇମାନୀ ଲୋକକୁ ପୋଲିସ ଧରି ନେଇଥାଏ । ତେଣୁ ଏହି ଅପରାଧକୁ ପାପ ବୋଲି ଧରି ନିଆଯାଏ । ନିଶାବାଜୀ, ଜୁଆ, ମିଛକହିବା ପରି ଖରାପ କାମକୁ ସମସ୍ତେ ଘୃଣା କରିଥା'ନ୍ତି । ଯଦି ଏହି ଦୋଷଗୁଡ଼ିକ ନିଜଠାରେ ନାହିଁ, ତେବେ ଆମେ ନିଜକୁ ନିଷ୍ପାପ ବୋଲି ଧରି ନେଇଥାଉଁ । ଆତ୍ମକଲ୍ୟାଣର ଉଦ୍ଦେଶ୍ୟ ଏକ ମୋଟା ପରିଭାଷାର ପରିଧି ମଧ୍ୟରେ ରହିଥିବାରୁ ପରିପୂର୍ଣ୍ଣ ହୋଇ ପାରୁନାହିଁ । ଆଧ୍ୟାତ୍ମିକ ଦୃଷ୍ଟିରେ ସେହି ଦୁର୍ଗୁଣ ଗୁଡ଼ିକ ବି ପାପରେ ଗଣାହୁଏ । ଯାହା ଆମର ବ୍ୟକ୍ତିତ୍ୱର ବିକାଶରେ ବାଧା ସୃଷ୍ଟି କରିଥାଏ । ଆମେ ତାକୁ ମଧ୍ୟ ନିବାରଣ କରିବା ଉଚିତ । ଆଳସ୍ୟ, ପ୍ରମାଦ, ଅପରିଷ୍କାର, କଟୁଭାଷା, ଆବେଶ, ପରଛିଦ୍ର, ଅନ୍ୱେଷଣ, ଈର୍ଷା, ଚୁଗୁଲି, ନିନ୍ଦା, ପକ୍ଷପାତ, ସ୍ୱାର୍ଥପରତା, ଅନୁଦାରତା, ଲୋଭ, ପରିଗ୍ରହ, ତୃଷ୍ଣା, ବାସନା, ଅସଂଯମ, ଦାୟିତ୍ୱହୀନତା, ଭୀରୁତା, ଡରକୁଳା, ଆଶଙ୍କା, ଅବିଶ୍ୱାସ, ଉଚ୍ଛୃଙ୍ଖଳତା, କୃତଘ୍ନତା ଭଳି ଅନେକ ଗୁଡ଼ିଏ ମାନସିକ ଦୁର୍ଗୁଣ ଯାହା ଆମମାନଙ୍କ ମଧ୍ୟରେ ଲୁଚି ରହିଛି, ତାହା ଅବଶ୍ୟ ଉପେକ୍ଷଣୀୟ ବୁଝିବା ଉଚିତ । ଏହା ନିଜର ବ୍ୟକ୍ତିତ୍ୱର ବିକାଶରେ ବଡ଼ ବାଧକ ହୋଇଥା'ନ୍ତି । ହଜାର ସଂଖ୍ୟାରେ ଶତ୍ରୁ ମିଳିକରି ଆମର ଯେତିକି କ୍ଷତି କରି ନପାରିବେ, ଆମ ମନ ଭିତରେ ଲୁଚି ରହିଥିବା ଏହି ଅବିଜ୍ଞାନ ଅଦୃଶ୍ୟ ଶ୍ରତୁ ତାହା ସହଜରେ କରିଦେଇ ପାରନ୍ତି । ଏଥିପାଇଁ ନିଜର ଦୋଷ-ଦୁର୍ଗୁଣ ଗୁଡ଼ିକର ନିରାକରଣ କରିବାର ଅଭିଯାନ ଚାଲୁରଖି ପ୍ରତ୍ୟେକ କର୍ମଯୋଗୀଙ୍କୁ ଅତି ସୂକ୍ଷ୍ମ ଦୃଷ୍ଟିରେ ନିଜର କ୍ରିୟା କଳାପ ପ୍ରତି ଜାଗ୍ରତ ରହିବାକୁ ପଡ଼ିଥାଏ । ସେହି ଆନ୍ତରିକ

ଶତ୍ରୁମାନଙ୍କର ପ୍ରଭାବ ଆମ ଉପରେ କେତେ ପରିମାଣରେ ଥାଏ, ସେମାନେ ନିଜର ଆଧିପତ୍ୟ କେବେ ବିସ୍ତାର କରେ, ତାକୁ ବିଚାର କରି ଶତ୍ରୁମାନଙ୍କୁ ତୁରନ୍ତ ବାହାରକୁ ଫୋପାଡ଼ି ଦେବାକୁ ହେବ । ଆନ୍ତରିକ ଦୋଷ ଦୁର୍ଗୁଣଗୁଡ଼ିକ ସହିତ ନିରନ୍ତର ସଂଘର୍ଷ ଜାରି ରଖିବା ହେଉଛି ବାସ୍ତବିକ ମହାଭାରତ । ଭଗବାନ ଶ୍ରୀକୃଷ୍ଣ ଗୀତାରେ ଅର୍ଜୁନଙ୍କୁ ଏହି ସଂଗ୍ରାମରେ କଟିବଦ୍ଧ ରହିବାପାଇଁ ପ୍ରୋତ୍ସାହନ ଦେଇଥିଲେ । ଏହା ହେଉଛି-କର୍ମଯୋଗୀର ଆତ୍ମା । ଗୀତାର ଏହି ସଂଦେଶରେ ଭଗବାନଙ୍କଦ୍ୱାରା ଆମ ପାଇଁ ବି କୁହାଯାଇଛି । ତାଙ୍କର ନିର୍ଦ୍ଦେଶକୁ ମାନିବା ସହିତ ଆତ୍ମୋଶୋଧନ ଓ ଆତ୍ମସୁଧାରର ଧର୍ମଯୁଦ୍ଧରେ ନିରନ୍ତର ଆମେ ଲାଗିରହିବା ।

ଏହି ଦୁର୍ଗୁଣର ଅଭାବପୂର୍ତ୍ତି ଜୀବନ-କ୍ରମରେ ସଦ୍‌ଗୁଣ ଗୁଡ଼ିକର ସମାବେଶ ଦ୍ୱାରା ହିଁ ସମ୍ଭବ ହେଇପାରିବ । ପ୍ରଯତ୍ନ ଏଥିପାଇଁ କରିବା ଦରକାର, ଆମର ଦୈନିକ ଗତିବିଧିରେ ସଦ୍‌ଗୁଣ ଗୁଡ଼ିକର ମାତ୍ରା ନିରନ୍ତର ବୃଦ୍ଧି ପାଉଥିବ । ପୁରୁଷାର୍ଥ, ପରିଶ୍ରମ, ନିୟମିତତା, ସ୍ୱଚ୍ଛତା, ମଧୁର ଭାଷା, ମାନସିକ ସନ୍ତୁଳନ, ଧୈର୍ଯ୍ୟ, ନମ୍ରତା, ଗୁଣଗ୍ରାହକତା, ଆତ୍ମୀୟତା, ନିରପେକ୍ଷତା, ନ୍ୟାୟ-ପ୍ରିୟତା, ଉଦାରତା, ସଂଯମ, ସଜ୍ଜନତା, ସଚ୍ଚରିତ୍ରତା, ନିଷ୍ଠତା, ସତର୍କତା, ଶୌର୍ଯ୍ୟ, ସାହସ, ଶ୍ରଦ୍ଧା, କୃତଜ୍ଞତା ଇତ୍ୟାଦି ସଦ୍‌ଗୁଣ ଗୁଡ଼ିକ ନିଜର ବିଚାରଣା ଏବଂ କ୍ରିୟାପଦ୍ଧତିରେ ଯେତେ ଅଧିକ ସମାବେଶ ହେଇପାରିବ, ଯେତିକି ଆନ୍ତରିକ ମହାନତା ବଢ଼ିବ । ଏହାଦ୍ୱାରା ଜୀବନର ଲକ୍ଷ୍ୟ ପୂର୍ଣ୍ଣତା ଓ ସରଳ ହେଇ ଚାଲିବ । ଏହି ଅଭିବର୍ଦ୍ଧନର ପ୍ରୟାସକୁ ଆମେ ଅହର୍ନିଶ କରିବା ଉଚିତ । ଏ' ସଂପର୍କରେ ଯେତେ ଅଧିକ ତତ୍ପରତା ପ୍ରକାଶ ପାଇବ, ଜାଣିବ ସେହି ପରିମାଣରେ କର୍ମଯୋଗର ସାଧନାର ଯୋଗାଭ୍ୟାସ ସଫଳତା ପୂର୍ବକ ଚାଲୁ ରହିପାରିବ ।

ଜୀବନ ନିର୍ବାହ ପାଇଁ ଆମକୁ ଅନେକ ପ୍ରକାରରେ ଛୋଟମୋଟ କାମ କରିବାକୁ ପଡ଼ିଥାଏ । ଏହାକୁ ପ୍ରସନ୍ନତା ପୂର୍ବକ କରିବା ଫଳରେ ତା' ପଛରେ ଦୃଷ୍ଟିକୋଣ ଉଚ୍ଚ ରହିଥାଏ । ଏହି କାର୍ଯ୍ୟଗୁଡିକ ପବିତ୍ର ଧର୍ମ କର୍ତ୍ତବ୍ୟର ପୂର୍ତ୍ତିପାଇଁ ଓ ଲୋକମଙ୍ଗଳ ଉଦ୍ଦେଶ୍ୟରେ କରୁଛି । ଏହା ମାଧ୍ୟମରେ ଭଗବାନଙ୍କ ଦ୍ୱାରା ପ୍ରଦତ୍ତ ଦାୟିତ୍ୱକୁ ମୁଁ ପାଳନ କରୁଛି ବୋଲି ମନ ଭିତରେ ଏହି ଧାରଣା ରହିବା ଉଚିତ । ଲୋଭ, ମୋହ, ତୃଷ୍ଣା ଓ ବାସନା ଦ୍ୱାରା ପ୍ରେରିତ ହୋଇନାହିଁ । ସ୍ୱାର୍ଥପରତାର

ସଂକୀର୍ଣ୍ଣତା ଯଦି ଦୃଷ୍ଟିକୋଣରୁ ବାହାରି ଆସେ ଏବଂ ସେଥିରେ କର୍ତ୍ତବ୍ୟପାଳନର ଭାବନା ଯୋଡ଼ି ହୋଇଯାଏ, ତେବେ ସେହି ଛୋଟମୋଟ କାମ ହିଁ ଉଚ୍ଚକୋଟିର ପୁଣ୍ୟ ପରମାର୍ଥରେ ପରିଣତ ହୋଇଯାଏ । ଦୃଷ୍ଟିକୋଣହିଁ ସବୁକିଛି । ମାନ୍ୟତା ବଦଳରେ ସବୁକିଛି ବଦଳିଯାଏ । ନରକକୁ ସ୍ୱର୍ଗରେ ଓ ପତନକୁ ଉତ୍ଥାନରେ ପରିଣତ କରିଦେବାର ଶ୍ରେୟ ନିଜ ନିଜର ଦୃଷ୍ଟିକୋଣରେ ହିଁ ଥାଏ । ତେଣୁ ଆମେ ପ୍ରତ୍ୟେକ ମୁହୂର୍ତ୍ତରେ ଏହାର ପ୍ରଯତ୍ନ କରିବା ଉଚିତ । ଏହାଦ୍ୱାରା ଆମର ପ୍ରତ୍ୟେକ ବିଚାର ଓ ପ୍ରତ୍ୟେକ କାର୍ଯ୍ୟ ଉଚ୍ଚ ଆଦର୍ଶରେ ଓ ପୁଣ୍ୟ ଭାବନାରେ ଜଡ଼ିତ ହୋଇପାରିବ । କର୍ମଯୋଗୀ ବି ଆହାର ବିହାର, ରହିବା ସହିବା ସାଧାରଣ ଲୋକଙ୍କ ପରି ହେଇପାରିବ । ତାଙ୍କର ବିଚାରଣ, ମାନ୍ୟତା ଏବଂ ଦୃଷ୍ଟି ଉଚ୍ଚତର ହେବ । ଆମେ ନିଜର ମନୋଭୂମିକୁ ଏହିପରି ତିଆରି କରିବାକୁ ଲାଗିପଡ଼ିବା । ନିଜର ପ୍ରତ୍ୟେକ କ୍ରିୟାକଳାପର ପଛରେ ଏମିତି ଦୃଷ୍ଟିକୋଣ ରଖିବାର ପ୍ରଯତ୍ନ କରିବା ଉଚିତ । ଏହି ଦିଗରେ ଯେତେ ପ୍ରଗତି ହେଇ ଚାଲିବ, ଆମର ଜୀବନ ଲକ୍ଷ୍ୟର ସେତିକି ନିକଟରେ ପହଞ୍ଚି ପାରିବା ।

ରାତ୍ରିରେ ଶୋଇବା ସମୟରେ ଆମେ ଏକ ଜୀବନର ସମାପ୍ତି ହେବାର ଅନୁଭବ କରିବା ଉଚିତ । ଆତ୍ମିକ ପ୍ରଗତିର ଦିଗରେ ପ୍ରାପ୍ତ ହେଇ ସଫଳତା ପାଇଁ ଭଗବାନଙ୍କୁ ଧନ୍ୟବାଦ ଦେବା । ଭୁଲକାମ ପାଇଁ ଅନୁତାପ କରି ନିଦ୍ରାଦେବୀଙ୍କ କୋଳରେ ଶାନ୍ତିପୂର୍ବକ, ସନ୍ତୋଷ ଓ ଆନନ୍ଦ ଅନୁଭବ କରିବାରେ ନିମଗ୍ନ ହୋଇଯିବା ଉଚିତ । ପ୍ରତିଦିନର ଜୀବନ-କ୍ରମ ଏହିପରି ଚାଲିଲେ ଆମକୁ ବୁଝିବାକୁ ହେବ ଯେ, କର୍ମଯୋଗର ସାଧନା ଠିକ ଭାବରେ ଚାଲିଛି । ଏହି ମାର୍ଗରେ ଚାଲିବା ସହିତ ଆମେ ନିଶ୍ଚିତ ରୂପେ ମଣିଷ ଜୀବନର ଈଶ୍ୱରୀୟ ପ୍ରୟୋଜନର ପୂର୍ଣ୍ଣତା ଆଣିପାରିବା ।

୨) ଜ୍ଞାନଯୋଗ ହେଉଛି ଦ୍ୱିତୀୟ ଜୀବନ ସାଧନା । ବିଚାର ଉତ୍କୃଷ୍ଟତା, ଆଦର୍ଶବାଦ ଆଡ଼କୁ ଗତି କରିବାରେ ପ୍ରେରଣା, ସତ୍ୟ ଓ ଅସତ୍ୟର ଅନ୍ତରକୁ ତୁଟେଇ ପାରୁଥିବା ବିବେକଶୀଳତା । ଯେଉଁ ସାହିତ୍ୟ ଆମକୁ ପ୍ରଦାନ କରାଯାଇଛି, ତାକୁ ପାଠ କରିବା ହେଉଛି ସ୍ୱାଧ୍ୟାୟ । ଏହି ବିଚାର ଗୁଡ଼ିକ ଶୁଣିବା ହେଉଛି ସତ୍‌ସଙ୍ଗ । ଆମର ନୈତିକ କ୍ରମରେ ଏହି ପ୍ରକାରର ସ୍ୱାଧ୍ୟାୟ ସତ୍‌ସଙ୍ଗ ପାଇଁ ଆବଶ୍ୟକ ସ୍ଥାନ ହେବା ଦରକାର । ଶରୀର ଭିତରେ ଦୈନିକ ମଳ ଜମିଥାଏ । ତାକୁ ସଫା କରିବା

ପାଇଁ ଝାଡ଼ା ପରିସ୍ରା, ଦାନ୍ତ ଘଷିବା ଓ ସ୍ନାନ କରିବା ପାଇଁ ସୁବ୍ୟବସ୍ଥା କରିବାକୁ ପଡ଼ିଥାଏ । ଘରଦ୍ୱାର, ବାସନକୁସନ, କପଡ଼ା ଓ ଆସବାବ ଜିନିଷପତ୍ରକୁ ପ୍ରତିଦିନ ଆମକୁ ସଫା କରିବାକୁ ପଡ଼ିଥାଏ । ସେହିପରି ସଂସାରର ଦୂଷିତ ବାତାବରଣର ଦୁଷ୍ପ୍ରଭାବ ଆମର ମନ ଉପରେ ଜମିଯାଏ । ତାକୁ ପରିଷ୍କାର କରିବାପାଇଁ ପ୍ରତିଦିନ ସ୍ୱାଧ୍ୟାୟ କରିବାର ଆବଶ୍ୟକ ହୋଇଥାଏ । ଶରୀରକୁ ସୁସ୍ଥ ରଖିବା ଉଦ୍ଦେଶ୍ୟରେ ଖାଦ୍ୟର ଦରକାର ପଡ଼ିଥାଏ । ଠିକ୍ ସେହିପରି ମସ୍ତିଷ୍କକୁ ବି ଭାବନାତ୍ମକ ପୋଷକ ଆହାର ଦେବା ଆବଶ୍ୟକ । ଯଦି ଆତ୍ମାକୁ ମଳିନ, ଦୁର୍ବଳ କରିବା ନାହିଁ, ତେବେ ସ୍ୱାଧ୍ୟାୟର ସାଧନ ଆମପାଇଁ ଅନିବାର୍ଯ୍ୟ । ବିବେକର ସ୍ଥିରତା ଓ ଉତ୍କୃଷ୍ଟତାର ଅଭିବୃଦ୍ଧି ପାଇଁ ଜ୍ଞାନଯୋଗ ସାଧନାକୁ ଆପଣେଇ ନନେଲେ, ସେ କୌଣସି ପ୍ରକାର କାମ କରିହୁଏନାହିଁ ।

ହଜାରେ ବର୍ଷ ତଳର ସ୍ଥିତିକୁ ଦେଖି ଲେଖା ଯାଇଥିବା କଥା କାହାଣୀକୁ ନେଇ କେତେଜଣ ସ୍ୱାଧ୍ୟାୟ ବୋଲି କହି ବୁଲୁଛନ୍ତି । ଏହି ତଥାକଥିତ ସ୍ୱାଧ୍ୟାୟଶୀଳ ବ୍ୟକ୍ତିମାନେ କେବଳ ଅସନା ମଇଳାକୁ ଓଲଟପାଲଟ କରି ଘାଣ୍ଟୁଛନ୍ତି ମାତ୍ର । ତା'ଦ୍ୱାରା କାହାରି କୌଣସି ପ୍ରକାର ମଙ୍ଗଳ ହେବାର ନାହିଁ । ଆଜିର ପରିସ୍ଥିତିର ଅନୁରୂପ ଉତ୍କୃଷ୍ଟତାର ପଥ ପ୍ରଦର୍ଶନ କରିପାରିବା, ଯେମିତି ବିବେକ ସଂଗତ, ପ୍ରକାଶ ଏବଂ ପ୍ରେରଣାରେ ପରିପୂର୍ଣ୍ଣ ସାହିତ୍ୟ ହିଁ ଏହି ଆବଶ୍ୟକତାକୁ ପୂରଣ କରିପାରିବ । ତେଣୁ ସ୍ୱାଧ୍ୟାୟ ପାଇଁ ଯାହା, ତାକୁ ଆପଣେଇ ନେବା, ସେଥିରେ ଥିବା ଭଲ ଗୁଡ଼ିକୁ ପରଖି ନେବା ଉଚିତ । ଯାହାକି ପଢ଼ି-ଶୁଣି ହେଇ ପାରିବ । ଉପରଲିଖିତ ପ୍ରୟୋଜନ ଗୁଡ଼ିକୁ ପୂରଣ କରିବାକୁ ହେବ । ଭୁଲଭ୍ରାନ୍ତିରେ ଓଲଟା ପାଲଟା କରି କହୁଥିବା ବିଚାର ଗୁଡ଼ିକ ତ ଅଭକ୍ଷ୍ୟ ଆହାର ସଙ୍ଗେ ସମାନ । ତାକୁ ତ୍ୟାଗ କରିବା ଉଚିତ ।

ଦୈନିକ ନିତ୍ୟକର୍ମରେ ସ୍ୱାଧ୍ୟାୟର ସମାବେଶ କରି ଆମେ ଜ୍ଞାନଯୋଗର ଓ ଆବଶ୍ୟକତାକୁ ପୂର୍ଣ୍ଣ କରିବା ଉଚିତ । କିନ୍ତୁ କାମ ସେତିକିରେ ଶେଷ ହୋଇଯାଏ ନାହିଁ । ବ୍ୟକ୍ତି ଓ ସମାଜର ଦୁର୍ଗତିର ଏକମାତ୍ର କାରଣ ସଦ୍‌ଭାବନା ଏବଂ ସଦ୍‌ବିଚାରର ଅଭାବ । ଆମେ ଏହି ଅଭାବର ପରିପୂରଣ କରିବା ଓ ଜନମାନସରେ ସଦ୍‌ବିଚାରର ବୀଜ ରୋପଣ କରିବା ପାଇଁ ସଦ୍‌ଜ୍ଞାନର ପ୍ରକାଶ କରିବା ଉଚିତ ।

ଯୁଗନିର୍ମାଣ ଯୋଜନା ଦ୍ୱାରା ଏହି ପ୍ରୟୋଜନର ପୂର୍ତ୍ତି ଉଦ୍ଦେଶ୍ୟରେ

ସର୍ବୋପରି ଜ୍ଞାନଯଜ୍ଞର ଆରମ୍ଭ କରାଯାଇଛି । ଏଥିରେ ସମ୍ମିଳିତ ହୋଇ ଆମେ ମାନବ ଜାତିର ସବୁଠାରୁ ବଡ଼ କଷ୍ଟକୁ ଦୂର କରିପାରିବା । ସଦ୍‌ଭାବନାର ଅକାଳକୁ ଦୂରେଇଦେଇ ପୁଣ୍ୟ ପରମାର୍ଥ କରିପାରିବା । ମହୁମାଛି ଫୁଲରୁ ମଧୁ ସଂଗ୍ରହ କରି ତା' ଫେଣାରେ ଜମା କରିରଖେ । ତାକୁ ସହଜରେ ମଣିଷ ଯେପରି ପାଇପାରିବ, ସେ ବ୍ୟବସ୍ଥା ମହୁମାଛି ହିଁ କରିଥାଏ । ଠିକ୍ ସେହିପରି ଯୁଗନିର୍ମାଣ ଯୋଜନାରେ ପୁଣ୍ୟ ପ୍ରକ୍ରିୟା ଚାଲିଛି । ଅତ୍ୟନ୍ତ ଶସ୍ତା, ସୁନ୍ଦର ଓ ପ୍ରଖର ପ୍ରକାଶରେ ପରିପୂର୍ଣ୍ଣ ସାହିତ୍ୟ ସୃଷ୍ଟିର ବ୍ୟବସ୍ଥା କରାଯାଇଛି । ପ୍ରତିଦିନ ମାତ୍ର ଗୋଟିଏ ଟଙ୍କା ଜ୍ଞାନଯଜ୍ଞ ଉଦ୍ଦେଶ୍ୟରେ ଜମା କରି ଚାଲିଲେ, ସେହି ଅର୍ଥରେ ନିଜଘରେ ଗୋଟିଏ ଜ୍ଞାନମନ୍ଦିର ତିଆରି କରିପାରିବେ । ନିଜ ପରିବାରର ଜଣେ ବି ସଦସ୍ୟ ଯେଭଳି ସେହି ଜ୍ଞାନମନ୍ଦିର ଗାରିମାର ଲାଭରୁ ବଞ୍ଚିତ ନହୁଅନ୍ତି । ଯେଉଁମାନେ ଅପାଠୁଆ ଥିବେ, ସେମାନଙ୍କୁ ଏହାକୁ ପଢ଼ି ଶୁଣାଇ ଦେବାକୁ ହେବ । ଏହି ଉପାୟରେ ଘର ଭିତରେ ସଦ୍‌ଜ୍ଞାନର ପ୍ରକାଶ ଉତ୍ପନ୍ନ କରି ଆମେ ନିଜର ପରିବାରକୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଏବଂ ନିତାନ୍ତ ଆବଶ୍ୟକ ସେବା ପ୍ରଦାନ କରିପାରିବା ।

ଘର ଭିତରେ ଜ୍ଞାନମନ୍ଦିର ସ୍ଥାପିତ ହେବାପରେ, ସେଇଠି ପ୍ରତିଦିନ ମାତ୍ର ଗୋଟିଏ ଲେଖାଏ ଟଙ୍କା ଜମା କରିବେ । ସେହି ଅର୍ଥରୁ ପତ୍ରିକା ଓ ପୁସ୍ତିକା ମଗାଇ ପାରିବେ । ସେହି ମୂଲ୍ୟବାନ ପୁସ୍ତିକା ଓ ପତ୍ରିକାକୁ ନେଇ ନିଜର ପ୍ରିୟବନ୍ଧୁ, ପଡ଼ୋଶୀ ଓ ପରିଚିତ ସାଧାରଣ ଲୋକମାନଙ୍କୁ ପଢ଼ିବାକୁ ଦେବେ । ସେମାନଙ୍କ ଘରକୁ ଯାଇ ସାହିତ୍ୟ ବିତରଣ କରି ପୁଣି ଫେରସ୍ତ ଆଣିବାକୁ ଦିନକୁ ଏକଘଣ୍ଟା ସମୟ ସୁରକ୍ଷିତ ରଖିବାକୁ ହେବ । ଏହି ପ୍ରକାର ନିଜର ପ୍ରଭାବରେ ଦଶ କୋଡ଼ିଏ ଜଣ ଲୋକଙ୍କ ନିକଟରେ ସଦ୍‌ଜ୍ଞାନର ପ୍ରକାଶ ପହଞ୍ଚାଇ ନେବାକୁ ହେବ । ଜ୍ଞାନଯଜ୍ଞର ଏହା ହେଉଛି ଅସଲ ସ୍ୱରୂପ । ପ୍ରତିଦିନ ଏକଟଙ୍କା ଖର୍ଚ୍ଚ କରିବା କାହାରି ପାଇଁ କିଛି ଗୋଟିଏ ବଡ଼କଥା ନୁହେଁ । ଏତିକିମାତ୍ର ତ୍ୟାଗଦ୍ୱାରା ଆମେ ବ୍ୟକ୍ତି ଓ ସମାଜ ପାଇଁ ନବନିର୍ମାଣର ଯୁଗନିର୍ମାଣ ପାଇଁ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବା । ଏହା ହେଉଛି, ବର୍ତ୍ତମାନ ପାଇଁ ସବୁଠାରୁ ବଡ଼ ଆବଶ୍ୟକତା । ଏହାର ପୂର୍ତ୍ତି ଉଦ୍ଦେଶ୍ୟରେ ଆମର ଦାୟିତ୍ୱହୀନତା, ଉପେକ୍ଷା ଓ ଅନିଷ୍ଟା ଯେପରି ନରହେ । ଜ୍ଞାନଯୋଗର ସାଧନା ପାଇଁ ସ୍ୱୟଂ ନିୟମିତ ସ୍ୱାଧ୍ୟାୟ ଓ ଅନ୍ୟପାଖରେ ସଦ୍‌ଜ୍ଞାନର ପ୍ରକାଶ ପହଞ୍ଚାଇବା

ଫଳରେ ଆମେ ସହଜ ସଂସାର ପାଇଁ ସର୍ବୋତ୍ତମ ଉପକାର କରିପାରିବା ।

ଜ୍ଞାନଯୋଗ ଦ୍ୱାରା ହିଁ ଦୁଃଖ, ଦାରିଦ୍ର୍ୟ ଏବଂ ଶୋକ ସନ୍ତାପରେ ବୁଡ଼ିରହିଥିବା ସମାଜକୁ ଉଦ୍ଧାର କରାଯାଇ ପାରିବ । ସଂସାରର ସମସ୍ତ କଷ୍ଟର ଗୋଟିଏ ମାତ୍ର କାରଣ ହେଉଛି-ଅଜ୍ଞାନ । ମଣିଷ ପାଖରେ ଏତେବେଶି ସାମର୍ଥ୍ୟ ରହିଛି, ସେଥିରେ କେବଳ ନିଜର ନୁହେଁ, ନିଜର ସଂପର୍କରେ ଆସୁଥିବା ଅନ୍ୟ ସମସ୍ତଙ୍କ ଜୀବନର ଶ୍ରୀ-ସମୃଦ୍ଧ, ସୁଖ ଶାନ୍ତି ଓ ଆନନ୍ଦ ଉଲ୍ଲାସରେ ପରିପୂର୍ଣ୍ଣ କରାଯାଇ ପାରିବ । ପଥଭ୍ରଷ୍ଟ ମାନବ ସନ୍‌ମାର୍ଗରେ ଚାଲିପାରିବ । ଏହାଦ୍ୱାରା ହେଉଥିବା ଉପକାରଠାରୁ ଆଉ କୌଣସି ବଡ଼ ଉପକାର ହୋଇ ନପାରେ । ଆର୍ଥିକ ସହାୟତା ଦ୍ୱାରା ନୁହେଁ, ବରଂ ନିଜର ସୁପ୍ତଶକ୍ତିକୁ ଜାଗ୍ରତ କରିବାଦ୍ୱାରା ହିଁ ମଣିଷର ସମସ୍ୟାଗୁଡ଼ିକର ସମାଧାନ ହୋଇପାରିବ । ଅତଏବ ଜ୍ଞାନଦାନ ହେଉଛି-ସର୍ବଶ୍ରେଷ୍ଠ ଦାନ । ଏକଥା ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ଅଟେ । ଆଜି ମାନବଜାତି ପାଇଁ ସଦ୍‌ଜ୍ଞାନ ସବୁଠାରୁ ବଡ଼ ଆବଶ୍ୟକତା ରହିଛି । ବିଘନାତ୍ମକ ବିଚାରଧାରାକୁ ସୃଜନାତ୍ମକ ଦିଗ ଆଡ଼କୁ ପ୍ରେରିତ କରିଦେଲେ, ଦେଖୁଦେଖୁ ସବୁ ପରିସ୍ଥିତି ବଦଳିଯିବ । କ୍ରାନ୍ତିଗୁଡ଼ିକ ମଧ୍ୟରେ ସର୍ବପ୍ରଧାନ ହେଉଛି-ବିଚାରକ୍ରାନ୍ତି । ବିଚାର ବଦଳିଯିବାରୁ ହାଡ଼ ମାଂସର ପିତୁଳା ମଣିଷ ମଧ୍ୟ ଦେବତା ହୋଇଯାଇପାରେ । ଏହି ପାଞ୍ଚଟି ତତ୍ତ୍ୱଦ୍ୱାରା ପ୍ରସ୍ତୁତ ଦୁନିଆ ସ୍ୱର୍ଗୀୟ ଉଲ୍ଲାସରେ ଓତପ୍ରୋତ ଭାବରେ ଜଡ଼ିତ ହୋଇପାରିବ । ଯୁଗପରିବର୍ତ୍ତନ ବିଚାର କ୍ରାନ୍ତିଦ୍ୱାରା ହିଁ ସମ୍ଭବ ହୋଇପାରେ ।

ଏହି ମହାନ ପ୍ରୟୋଜନର ପୂର୍ତ୍ତିପାଇଁ ଯୁଗନିର୍ମାଣ ଯୋଜନା ଦ୍ୱାରା ଜ୍ଞାନଯଜ୍ଞର ଐତିହାସିକ ଅଭିଯାନ ଆରମ୍ଭ କରାଗଲା । ଏହାକୁ ସଫଳ କରିବା ପାଇଁ ନିଜର ସାମର୍ଥ୍ୟ ଅନୁସାରେ ଯେତେବେଶି ଯୋଗଦାନ କରାଯାଇପାରେ, କରାଯିବା ଉଚିତ । ତାକୁ ହିଁ ସାର୍ଥକ ପରମାର୍ଥ କୁହାଯିବ । ନିଜର କ୍ଷମତା, ପ୍ରତିଭା ଓ ସୁବିଧାରୁ ଏକ ଅଂଶ ଏଥିପାଇଁ ପ୍ରଦାନ କରିବାକୁ, ଉଦାରତା ପୋଷଣ କରିବାକୁ ଆମେ ଯତ୍ନବାନ ହେବା । ବ୍ୟକ୍ତିଗତ ଚେଷ୍ଟାରେ ନିଜ ନିଜର ଢ଼ଙ୍ଗରେ ନିଜ ଅଞ୍ଚଳରେ କିଛି ଭଲକାମ କରିହେବ, କିନ୍ତୁ ଏ' କଥା ମଧ୍ୟ ଧ୍ୟାନ ଦେବାକୁ ହେବ ଯେ, ବିଶ୍ୱବ୍ୟାପୀ ମହାନ ପ୍ରୟୋଜନର ପୂର୍ତ୍ତି ସାମୂହିକ, ସଂଗଠିତ ଏବଂ କେନ୍ଦ୍ରିତ ପ୍ରକ୍ରିୟା ଦ୍ୱାରା ହିଁ ସଂପନ୍ନ ହୋଇପାରିବ । ବାନର ଓ ଭାଲୁମାନେ ମିଶି ଶ୍ରୀରାମଙ୍କୁ ସହଯୋଗ କରି ଅସୁର ବିନାଶ କରିଥିଲେ । ତାଙ୍କର ଭୂମିକାକୁ ଆଜିଯାଏ କେହି ଭୁଲିପାରି

ନାହାନ୍ତି । ଗୋବର୍ଦ୍ଧନକୁ ଉଠାଇବା ସମୟରେ ଗୋପାଳ ବାଳକମାନେ ଶ୍ରୀକୃଷ୍ଣଙ୍କୁ ସହଯୋଗ କରିଥିଲେ । ସେହି ଗୋପାଳ ବାଳକମାନଙ୍କର ସଂଗଠିତ ପ୍ରଯତ୍ନକୁ ଉପେକ୍ଷା କରାଯାଇ ନପାରେ । ହନୁମାନ ବଡ଼ ଶକ୍ତିଶାଳୀ ଥିଲେ, କିନ୍ତୁ ତାଙ୍କର ଶକ୍ତି ସେତେବେଳେ ସାର୍ଥକ ହେଲା, ଯେତେବେଳେ ସେ ଶ୍ରୀରାମଙ୍କ ଅଭିଯାନରେ ଅଂଶ ଗ୍ରହଣ କଲେ । ଯଦି ସେ ନିଜର ଗଦାକୁ ଧରି ଏକୁଟିଆ ଡ଼େଇଁଥା'ନ୍ତେ ଏବଂ ଭାବିଥା'ନ୍ତେ ଯେ, ସମସ୍ତ ଯଶ, ପୌରୁଷ ଓ ଶ୍ରେୟ ତାଙ୍କୁ ହିଁ ମିଳିଯାଉ, ତେବେ ଏହି କ୍ଷୁଦ୍ରତା ତାଙ୍କୁ ଲାଭଦାୟକ ହୋଇପାରି ନଥା'ନ୍ତା, କିନ୍ତୁ ମହାଅଭିଯାନ ବି ସଫଳ ହୋଇପାରି ନଥା'ନ୍ତା । ଏଥିପାଇଁ ଆମେ ନିଜର ପରମାର୍ଥ ଭାବନାକୁ ଏହି ଯୁଗର ମହାନତମ ଐତିହାସିକ ଅଭିଯାନର "କେନ୍ଦ୍ରୀୟ ଜ୍ଞାନଯଜ୍ଞ"ରେ ସମର୍ପିତ କରିଦେବା । ବିନ୍ଦୁଏ ଜଳ ଯେପରି ନିଜର ଅସ୍ତିତ୍ୱକୁ ସମୁଦ୍ରକୁ ସମର୍ପିତ କରିଦେଇ ନିଜେ ସମୁଦ୍ର ହେଇଯାଏ, ସେହିପରି ଆମେ ନିଜକୁ ସମର୍ପଣ କରିଦେଇ ବିଶ୍ୱ-ମାନବ ପୁନରୁତ୍‌ଥାନର ଶ୍ରେୟଭାଜନ ହେଇପାରିବା । ଯୁଗ ନିର୍ମାଣର ମହାନ ଭୂମିକା ପ୍ରସ୍ତୁତ କରିପାରିବା ।

୩) ଭକ୍ତିଯୋଗର ଅଭ୍ୟାସ କରିବାପାଇଁ ପ୍ରତିଦିନ ନିୟମିତ ଭଗବାନଙ୍କର ଉପାସନା କରିବା ଉଚିତ । ନାମ ରୂପକୁ ଜପ ଧ୍ୟାନ ବ୍ୟତୀତ ପ୍ରେମ-ଭାବନାର ବି ଅଧିକରୁ ଅଧିକ ବିକାଶ କରିବା ଉଚିତ । ପ୍ରେମ ହେଉଛି-ପରମେଶ୍ୱରଙ୍କ ପ୍ରତ୍ୟକ୍ଷ ଅନୁଭୂତି । ଯାହାର ଅନ୍ତକରଣରେ ଯେତେବେଶି ନିସ୍ୱାର୍ଥ, ଯେତେବେଶି ଉତ୍କୃଷ୍ଟ ପ୍ରେମ ଜାଗ୍ରତ ହେବ, ସେତିକି ପରିମାଣରେ ପରମେଶ୍ୱରଙ୍କ ନିକଟବର୍ତ୍ତୀ ହୋଇପାରିବ । ପରମାତ୍ମା ଗାୟତ୍ରୀମାତାଙ୍କ ରୂପ ଧ୍ୟାନକରି ସେମାନଙ୍କ ସାଥୀରେ ପରସ୍ପର ପ୍ରେମ କ୍ରୀଡ଼ାର ଆଦାନପ୍ରଦାନ କରି ଆମେ ପ୍ରୀତିମୟ ଅନୁଭୂତିର ରସସ୍ୱାଦନ କରିଥାଉଁ । ଏହାକୁ ଏକ ବ୍ୟାୟାମ ଅଭ୍ୟାସ କୁହାଯାଏ । ଏହି ପ୍ରେମଭାବନା ଅନ୍ତଃକରଣରେ ଅମୃତନିର୍ଝରପରି ଯେତେବେଳେ ଅବିଚ୍ଛିନ୍ନ ଭାବରେ ପ୍ରଭାବିତ ହୁଏ, ତାଙ୍କ ସଂପର୍କରେ ଆସୁଥିବା ସମସ୍ତ ବ୍ୟକ୍ତି, ସମସ୍ତ ପଦାର୍ଥ, ସ୍ନେହାସିକ୍ତ ଆତ୍ମିୟତା ତଥା ପ୍ରେମ ପ୍ରୀତିରେ ଭରପୂର ମଙ୍ଗଳମୟ ଦୃଷ୍ଟିଗୋଚର ହେବାରେ ଲାଗନ୍ତି । ଏହାକୁ ଭକ୍ତିଯୋଗ କୁହାଯାଏ ।

ପ୍ରାଣୀର ପ୍ରାଣରେ ଥିବା ପରମେଶ୍ୱରଙ୍କ ପ୍ରତି ଯାହାର ପରିପୂର୍ଣ୍ଣ ପ୍ରେମ

ଥାଏ, ପ୍ରଭୁଙ୍କ ସଙ୍ଗେ ତାଙ୍କର ଉଦାରତା ଓ ଆତ୍ମିୟତା ଥାଏ, ସେ ଜଣେ ସଚ୍ଚା ଭକ୍ତ । ଏହି ଭକ୍ତିଯୋଗ ଓତ-ପ୍ରୋତ ଭାବରେ ପରମେଶ୍ୱରଙ୍କ ସହିତ ଜଡ଼ିତ ହେଲେ, ଭକ୍ତ-ଭଗବାନଙ୍କ ମଧ୍ୟରେ ପ୍ରେମବାଦ ଆରମ୍ଭ ହୋଇଥାଏ । ଏହିପରି ମୀରା, ଶବରୀ ଓ ସୁରଦାସ, ତୁଳସୀଦାସ, ହନୁମାନ, ସୁଦାମା, ଅର୍ଜୁନ, ଗୋପପୁରର ଗୋପୀମାନେ, ଗୋପାଳ ବାଳକମାନେ, ଭାଲୁ ଓ ବାନରମାନେ ଭଗବାନଙ୍କୁ ନିଜର ପ୍ରିୟସାଥୀ, ସହଚର ହୋଇ ସଫଳତା ହାସଲ କରିଥିଲେ । ବ୍ୟକ୍ତିର ମହାନତା ତା'ର ଏହି ପ୍ରେମଭାବନାଦ୍ୱାରା ହିଁ ସମ୍ଭବ ହୋଇଥାଏ । ତେଣୁ ସେମାନେ ନିଜ ନିଜର ଅନୁଭୂତି କାରଣରୁ ପ୍ରତ୍ୟେକ ମୁହୂର୍ତ୍ତରେ ଆନନ୍ଦ ବିଭୋର ହେଉଥିଲେ । ଏହି ପ୍ରେମଭାବନା ହିଁ ବ୍ୟବହାରିକ ଜୀବନରେ ଦୟା, କରୁଣା, ଆତ୍ମୀୟତା, ଉଦାରତା, ସେବା, ସଜ୍ଜନତା ଓ ପରମାର୍ଥ ପରାୟଣତା ଭାବରେ ପରିଲକ୍ଷିତ ହୋଇଥାଏ । ଏହି ସତ୍ୟବୃତ୍ତିର ବିକାଶଦ୍ୱାରା ସମାଜ ତଥା ସଂସାରର ସମସ୍ତ ସମସ୍ୟାର ସମାଧାନ ହେଇଥାଏ । ଚିରସ୍ଥାୟୀ ଶାନ୍ତି, ସମୃଦ୍ଧି ଓ ପ୍ରଗତିର ପଥ ପ୍ରସସ୍ତ ହୋଇପାରେ । ଧରିତ୍ରୀ ଉପରେ ସ୍ୱର୍ଗର ଅବତରଣ ହୋଇ ରାମରାଜ୍ୟର ଲକ୍ଷ୍ୟ ପୂରଣ ହୋଇପାରେ । ଏହା ପ୍ରେମ ଭାବନାର ବିକାଶ ଦ୍ୱାରା ହିଁ ସମ୍ଭବ ହେବ । ଜନ୍ମଦିନର ଅବସରରେ ଏହି ଭକ୍ତିଯୋଗର ଶୁଭାରମ୍ଭ ଆମକୁ କରିବାକୁ ହେବ । ଯଦି ବର୍ତ୍ତମାନ ପର୍ଯ୍ୟନ୍ତ ଆମର ଉପାସନା ନିୟମିତ ଭାବରେ ହୋଇ ପାରିନାହିଁ, ତେବେ ଆଜିର ଜନ୍ମଦିନର ଶୁଭ ଅବସରରୁ ତାହା ଆରମ୍ଭ କରିଦେବା ଦରକାର । ଯେଉଁ ପରମାତ୍ମାଙ୍କର ଅପାର କରୁଣା ଆମମାନଙ୍କ ଉପରେ ରହିଛି, ତାଙ୍କୁ ପନ୍ଦର ମିନିଟ ପାଇଁ ସ୍ମରଣ କରି ଧନ୍ୟବାଦ ପ୍ରଦାନ ନକଲେ, ତାଙ୍କ ପାଖରେ ବସି ନିଜର ଦୁଃଖ କହିବା ଓ ତାଙ୍କ କଥାକୁ ଶୁଣିବା ପାଇଁ ଟିକେ ସମୟ ବାହାର କରି ନପାରିବା, ତେବେ ତ ଆମେ କୃତଘ୍ନ ହେଇଯିବା । ଆମେ ଏହି ପାପରୁ ବଞ୍ଚିବାକୁ ଚେଷ୍ଟା କରିବା ଉଚିତ । ତାଙ୍କର ଉପାସନା ଉଦ୍ଦେଶ୍ୟରେ କିଛି ସମୟ ବାହାର କରିବା ଉଚିତ । ଯଦି ଇଚ୍ଛା ଦୃଢ଼ ହେବ, ତେବେ ନିଶ୍ଚୟ ସମୟ ମିଳିବ ଓ ସେଥିରେ ମନ ଲାଗି ରହିବ । ଈଶ୍ୱରଙ୍କ ନିକଟବର୍ତ୍ତୀ ହେବା ଓ ଉପାସନା ଜୀବନକୁ ସୁବିକଶିତ ଏବଂ ସାର୍ଥକ କରିବା ଦିଗରେ ଅତ୍ୟନ୍ତ ସହାୟକ ସିଦ୍ଧ ହୋଇଥାଏ । ଯଦି ଆଜିଯାଏ ଏହି ଦିଗରେ ନିୟମିତତା ହୋଇ ନଥାଏ, ତେବେ

ବର୍ତ୍ତମାନ ହିଁ ସେ ଭୁଲକୁ ସୁଧାରିନେବା ଉଚିତ ।

ଯୁଗନିର୍ମାଣର ଶତସୂତ୍ରୀ କାର୍ଯ୍ୟକ୍ରମରେ ଏହିପରି ଅନେକ ଯୋଜନା ରହିଛି । ଯାହାକୁ ବିଭିନ୍ନ ଶ୍ରେଣୀର ବ୍ୟକ୍ତି ନିଜର କାର୍ଯ୍ୟକ୍ଷମତା ଓ ସ୍ଥିତି ଅନୁସାରେ ପୁଣି ନିଜ କ୍ଷେତ୍ରରେ କାର୍ଯ୍ୟନ୍ୱିତ କରିବା ଉଚିତ । ଏହାଦ୍ୱାରା ନିଜର ପରମାର୍ଥ ବୃତ୍ତିର ପରିପୃଷ୍ଟ କରିବାର ଅଭ୍ୟାସ କରିପାରିବା । ମହାନ ଗୁଣର ଅଭିବର୍ଦ୍ଧନ ମହାନ କାର୍ଯ୍ୟ କରିବା ଦ୍ୱାରା ଏହା ପ୍ରତୀତ ହୋଇଥାଏ । ସଦ୍‌ଭାବନାକୁ ପରିପୁଷ୍ଟ କରିବା ସତ୍‌କର୍ମରେ ହିଁ ସମ୍ଭବ ହୋଇଥାଏ । ଉତ୍ତମ ବିଚାର ଓ ଉତ୍ତମ କାର୍ଯ୍ୟ ମିଳିବାଦ୍ୱାରା ହିଁ ମଣିଷ ସୁସଂସ୍କାରଯୁକ୍ତ ହୋଇପାରେ । ସେହି ସଂସ୍କାରର ମାତ୍ରା ଅନୁସାରେ ଆତ୍ମବଳ ବୃଦ୍ଧିହୁଏ । ଏହି ଲକ୍ଷ୍ୟକୁ ଧ୍ୟାନରେ ରଖି ଆମେ କିଛି ନା କିଛି ଶ୍ରମ, କିଛି ନା କିଛି ଧନ ପରମାର୍ଥଙ୍କ ପାଇଁ ଲଗାଇବା ଉଚିତ । ପାଣିରେ ପଶିଲେ ହିଁ ପହଁରିବା ଶିଖିହୁଏ । ପରମାର୍ଥପୂର୍ଣ୍ଣ, ଲୋକମଙ୍ଗଳର ସତ୍‌କର୍ମ କରିବାରେ ହିଁ ସେହି ପ୍ରୟୋଜନ ପୂର୍ଣ୍ଣ ହୋଇଥାଏ । ଯେଉଁଥିପାଇଁ ଆମକୁ ମଣିଷ ଶରୀର ମିଳିଛି । ଏହିଭଳି ପୁଣ୍ୟ ପ୍ରୟୋଜନକୁ ଉପେକ୍ଷା କରି ଆମେ ଟିକେମାତ୍ର ପୂଜା ପାଠ କରିନେଇ ପାରିବା ସତ, କିନ୍ତୁ ଆତ୍ମ କଲ୍ୟାଣର ପୂର୍ତ୍ତି ପାଇଁ ତାହା ପର୍ଯ୍ୟାପ୍ତ ନୁହେଁ । କୌଣସି ଗୋଟାଏ ଅଧେ ଛୋଟମୋଟ ଧାର୍ମିକ କର୍ମକାଣ୍ଡ ବା ତୀର୍ଥଯାତ୍ରା, ସ୍ନାନ ଇତ୍ୟାଦି କରିବାଦ୍ୱାରା ନିଜକୁ ଈଶ୍ୱର ଭକ୍ତ ବା ଧର୍ମାତ୍ମା ବୋଲି ଭାବୁଥିବା, ତେବେ ଏଭଳି ଭ୍ରାନ୍ତ ଧାରଣାକୁ ତୁରନ୍ତ ମନରୁ ବାହାର କରିଦେବା ଉଚିତ । ଆମେ ଆତ୍ମପ୍ରବଞ୍ଚନାରେ ରତିଏ ମଧ୍ୟ ସାର୍ଥକତା ଲାଭ କରିପାରିବା ନାହିଁ । ପୂଜାପାଠ, କଥା-କୀର୍ତ୍ତନ, ତୀର୍ଥ-ସ୍ନାନ ବା ବିଭିନ୍ନ କର୍ମକାଣ୍ଡର ପ୍ରୟୋଜନ କେବଳ ମାତ୍ର ଆମର ପରମାର୍ଥ ଭାବନାର ଆନ୍ତରିକ ଉତ୍କୃଷ୍ଟତାକୁ ଜାଗ୍ରତ କରାଇବ । ଏହା ଜାଗ୍ରତ ହୋଇଛି କି ନାହିଁ, ଜଣାପଡ଼ିବ-ଆମେ ସ୍ୱାର୍ଥ ପ୍ରୟୋଜନରେ ଦିନରାତି ଲାଗି ରହିଛୁ କି ନାହିଁ । ଏହି ସଂକୀର୍ଣ୍ଣତା ତଳରୁ ଉଠାଇ ଉପରକୁ ପହଞ୍ଚାଇବାର, ପରମାର୍ଥ ପ୍ରୟୋଜନରେ ତତ୍ପର ହେବାର, ଈଶ୍ୱରଙ୍କ ଇଚ୍ଛାକୁ ପୂର୍ଣ୍ଣ କରିବାରେ ତାହା ସଂଲଗ୍ନ ହେଉଛି କି ନାହିଁ । ଯେଉଁ ପୂଜା-ପାଠ କରାଯାଉଛି, ତାହାର କୌଣସି ପ୍ରୟୋଜନର ପୂରଣ କରାଯାଇ ପାରୁଛି କି ନାହିଁ ? ନହେଲେ ଈଶ୍ୱରଙ୍କୁ ତୋଷାମଦ ବା ପସନ୍ଦ ମନେକରି ତାଙ୍କର ମନ ଖୁସି ପାଇଁ ଗୀତ ଗାଇବା ହେଉଛି ମୂର୍ଖତା ।

ଉତ୍କୃଷ୍ଟ ବ୍ୟକ୍ତିତ୍ୱ ଓ ଈଶ୍ୱରଙ୍କ ଦ୍ୱାରା କରାଯାଇଥିବା ପରମାର୍ଥିକ ସତ୍‌କର୍ମ ଦ୍ୱାରା ହିଁ ଈଶ୍ୱରଙ୍କ ପ୍ରସନ୍ନତାର ଆଧାର । ଏହି ଯଥାର୍ଥତାକୁ ଆମେ ଯେତେଶୀଘ୍ର ବୁଝିନେଇ ପାରିବା, ସେତିକି ମଙ୍ଗଳ ହେବ ।

ଆଧ୍ୟାତ୍ମର ବାସ୍ତବିକ ସ୍ୱରୂପ ହିଁ ଆମର ଆତ୍ମକଲ୍ୟାଣର ଆଧାର ହେଇପାରେ । ତେଣୁ ଜନ୍ମଦିନର ଅବସରରେ ସଚ୍ଚୋଟ ଅଧ୍ୟାତ୍ମବାଦୀ, ସଚ୍ଚୋଟ ଈଶ୍ୱର ଭକ୍ତ ଓ ମଣିଷ ହେବାର ପ୍ରୟୋଜନ କରିବା ଉଚିତ । ଏଥିପାଇଁ ଆଦର୍ଶବାଦିତା ଏବଂ ଉତ୍କୃଷ୍ଟତାର ଅଧିକାଧିକ ସମାବେଶ ନିଜର ବିଚାରଣା ଏବଂ କ୍ରିୟା-ପଦ୍ଧତିରେ କରିବାର ପ୍ରଯତ୍ନ ପାଇଁ ଚେଷ୍ଟିତ ହେବା ଦରକାର ।

ଜନ୍ମଦିନ ଅବସରରେ ଆପଣଙ୍କର କ'ଣ ବିଚାରଣା ହେବା ଉଚିତ, ତାହା ଆଧାର ପୁସ୍ତିକାର ସଂକେତ ରୂପରେ ପ୍ରଦାନ କରାଯାଇଛି । ଆପଣଙ୍କର କାମହେଲା-ତାକୁ ନିଜର ସ୍ଥିତି ଅନୁରୂପ ବ୍ୟାବହାରିକ ଜୀବନରେ ସମାବିଷ୍ଟ କରିବାର ଯୋଜନା ପ୍ରସ୍ତୁତ କରିବେ । ଦୃଢ଼ତାପୂର୍ବକ ଚଳାଇ ରଖିବା ନିଶ୍ଚୟ କରିବେ । ଜୀବନର ଉଦ୍ଦେଶ୍ୟ ସ୍ୱରୂପ ଓ ତା'ର ସଦୁପଯୋଗ କିଭଳି ସମ୍ଭବ ହେବ, ସେ ସଂପର୍କରେ ଆମକୁ ବାରମ୍ବାର ବିଚାର କରିବାକୁ ହେବ । ବିତିଯାଉଥିବା ଆମର ବହୁମୂଲ୍ୟ ସମୟକୁ କିଭଳି କେଉଁ ରୀତି ନୀତି ମାଧ୍ୟମରେ ଅତୀତ କରାଯାଇ ପାରିବ, ସେ ବିଷୟରେ ଟିକେ ଚିନ୍ତା କରିବାକୁ ହେବ । ଫଳରେ ସମୟ ଚାଲିଯିବା ପରେ ଆମକୁ ଅନୁତାପ କରିବାକୁ ପଡ଼ିବ ନାହିଁ । ଯଦି ଆମେ ଗମ୍ଭୀରତା ସହିତ ଏକଥାକୁ ବିଚାର କରିବା, ତେବେ ଜୀବନ ସମ୍ପର୍କରେ ନିଜର ବର୍ତ୍ତମାନ ଭୌତିକବାଦୀ ମାନ୍ୟତାକୁ ବଦଳାଇ ପାରିବା । ସାଧନାତ୍ମକ ଜୀବନ ଜୀଇଁବା ପାଇଁ କର୍ମଯୋଗ ତଥା ଭକ୍ତିଯୋଗର ସାଧନା କରିବା ଆବଶ୍ୟକ । ପ୍ରସ୍ତୁତ ପୁସ୍ତିକା ଏ ସଂପର୍କରେ ଆପଣଙ୍କୁ କିଛି ପ୍ରକାଶ ଏବଂ ସହଯୋଗ ଦେଇପାରିବ ବୋଲି ବିଶ୍ୱାସ ଅଛି । ଆପଣ ପ୍ରସ୍ତୁତ ତଥ୍ୟ ଉପରେ ଯେତେ ପରିମାଣରେ ବିଚାର କରିବେ, ସେତିକି ପରିମାଣରେ ଜୀବନକୁ ସଫଳ ଏବଂ ସାର୍ଥକ କରିବା ପାଇଁ ଆବଶ୍ୟକ ଉତ୍ସାହ ଏବଂ ସାହସ ପାଇ ପାରିବେ ।





## ଜ୍ଞାତବ୍ୟ

ଅଖିଳ ବିଶ୍ୱ ଗାୟତ୍ରୀ ପରିବାରର ପ୍ରତିଷ୍ଠାତା ବେଦମୂର୍ତ୍ତି ତପୋନିଷ୍ଠ ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟଙ୍କ ଲିଖିତ ସମସ୍ତ ବେଦ, ଉପନିଷେଦ, ପ୍ରଜ୍ଞାପୁରାଣ, ମହାବିଜ୍ଞାନ ଆଦି ଅନ୍ୟାନ୍ୟ ସମସ୍ତ ସାହିତ୍ୟ ସୁଲଭ ମୂଲ୍ୟରେ ଆକର୍ଷଣୀୟ ରିହାତି ସହିତ ନିମ୍ନ ଠିକଣାରେ ଉପଲବ୍ଧ ।

ଅନୁରୋଧ ପୂର୍ବକ ଯୋଗାଯୋଗ କରନ୍ତୁ ।

ଶ୍ରୀରାମ ସେବା ସଂସ୍ଥାନ
ଭି.ଆଇ.ଏମ୍-୫୫, ଶୈଳଶ୍ରୀ ବିହାର
ଭୁବନେଶ୍ୱର-୨୪
ମୋ : ୯୪୩୯୦୦୭୮୫୪



# ହୃଦୟରୁ ପଦେ

"ସ୍ମରଣ ରଖନ୍ତୁ ଯେ ଆଗାମୀ ଦିନରେ ମିଶନର କାର୍ଯ୍ୟ ବହୁତ ବଢ଼ିବ । ବର୍ତ୍ତମାନଠାରୁ ଅନେକ ଗୁଣ । ଏଥିପାଇଁ ଆପଣଙ୍କର ତତ୍ପରତା ଏମିତି ହେବା ଦରକାର, ଯାହାକୁ ଉଚ୍ଚରୁ ଉଚ୍ଚ ଶ୍ରେଣୀର କୁହାଯାଇପାରିବ । ଆପଣଙ୍କର ଅନ୍ତରାତ୍ମା ଯାହାର ଲେଖାଯୋଖା କରି ନିଜକୁ କୃତକୃତ୍ୟ ଅନୁଭବ କରିବ । ଆମେ ଖୁସିରେ ଫାଟି ପଡିବା ନାହିଁ ଏବଂ ପ୍ରେରକ ସତ୍ତା ଆପଣଙ୍କୁ ଏତେ ଘନିଷ୍ଠ କରିଦେବେ । ଯେମିତି ରାମ ପଞ୍ଚାୟତରେ ଷଷ୍ଠ ହନୁମାନ ପଶିଯାଇଥିଲେ ।

କହିବାର ସାରାଂଶ ହେଉଛି ଆପଣ ପ୍ରତିଦିନ ନିଜର ଅନ୍ତରାତ୍ମାକୁ ପଚାରନ୍ତୁ ଯେ ଯାହା ଆମେ କରିପାରିଲେ ତହିଁରେ କେଉଁଠି ହେଲେ ସୋରିଶ ପ୍ରମାଣ ତ୍ରୁଟି ରହିଲା ନାହିଁତ ? ଆଳସ୍ୟ ପ୍ରମାଦ ଚୁପ୍‌ଚାପ୍ ଆସି ଆପଣଙ୍କ କ୍ରିୟା କଳାପରେ ପ୍ରବେଶ କରିବାର ସୁଯୋଗ ପାଇ ନାହିଁ ତ ? ଅନୁଶାସନରେ ବ୍ୟତିକ୍ରମ ହୋଇ ନାହିଁ ତ ? ନିଜର କୃତ୍ୟ ଗୁଡ଼ିକୁ ଅନ୍ୟମାନଙ୍କ ଠାରୁ ଅଧିକ ମନେ କରିବାର ଅହଂକାର ଛଦ୍ମରୂପରେ ଆସି ଆପଣଙ୍କ ଉପରେ ସବାର ହୋଇ ଯାଇ ନାହିଁ ତ ?

ଏହି ବିରାଟ ଯୋଜନା ନିଶ୍ଚୟ ପୂର୍ଣ୍ଣ ହେବ । ଏତିକି ଦେଖିବାର କଥା ଯେ ଏହି ଅଗ୍ନିପରୀକ୍ଷା ବେଳରେ ଆପଣଙ୍କ ଶରୀର, ମନ ଓ ବ୍ୟବହାରରେ କେଉଁଠି ବିଶୃଙ୍ଖଳା ନାହିଁ ତ ? ଉଚ୍ଚ କାମ ସର୍ବଦା ଉଚ୍ଚ ବ୍ୟକ୍ତିତ୍ୱ କରିଥା'ନ୍ତି । କେହି ଦୀର୍ଘ ଶରୀର ଦୃଷ୍ଟିରୁ ଉଚ୍ଚ ହୋଇ ନଥାଏ । ଶ୍ରମ, ମନଯୋଗ, ତ୍ୟାଗ ଓ ନିରହଂକାରୀତା ହିଁ କାହାକୁ ଉଚ୍ଚ କରିଥାଏ । ଆଗାମୀ କାର୍ଯ୍ୟକ୍ରମ ଉଚ୍ଚ ହେବ । ଆପଣଙ୍କ ଉଚ୍ଚତା ତାହାଠାରୁ କମ୍ ନହେଉ ଆପଣମାନଙ୍କ ଉପରେ ଏହି ଏକମାତ୍ର ଆଶା, ଅପେକ୍ଷା ଓ ବିଶ୍ୱାସ ରଖି ପାଦ ଆଗକୁ ବଢ଼ାଉଛୁ । ଏହି ବିଷମ ବେଳାରେ ଆପଣମାନଙ୍କ ମଧ୍ୟରୁ କେହି ପଛୁଆ ହୋଇ ନଯାଉ, ଯେଉଁଥି ପାଇଁ ପଛରେ ପଶ୍ଚାତାପ କରିବାକୁ ପଡିବ ।

**ପ.ଶ୍ରୀରାମଶର୍ମା ଆଚାର୍ଯ୍ୟ**

ଶ୍ରୀ ମୁକ୍ତିକାନ୍ତ ବିଶ୍ୱାଳ, ସୁପୁତ୍ର ଶ୍ରୀ ଗଣେଶ୍ୱର ବିଶ୍ୱାଳ
କଳାରାହାଙ୍ଗ, ଭୁବନେଶ୍ୱରଙ୍କ ସୌଜନ୍ୟରୁ ପ୍ରକାଶିତ